# ଜନ୍ମତିଥି

( ସାମାଜିକ ନାଟକ )

ଶ୍ରୀମତୀ ସୀତାଦେବୀ ଖାଡ଼ଙ୍ଗା

ଲେଖିକା

ଶ୍ରୀମତୀ ସୀତାଦେବୀ ଖାଡ଼ଙ୍ଗା

ପ୍ରକାଶକ

ଦାସ ବ୍ରଦର୍ସ

ବ୍ରହ୍ମପୁର, କଟକ



ପ୍ରଥମ ମୁଦ୍ରଣ

୧୯୬୪



ମୁଦ୍ରାକର

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

ସତ୍ୟବାଦୀ ପ୍ରେସ

କଟକ-୧

ମୂଲ୍ୟ ଟ ୨·୭୫ ନୂ: ପ:

ସ୍ୱର୍ଗତ ପିତୃଦେବଙ୍କ

ପଦତଳେ

ଭକ୍ତିର ନିଦର୍ଶନ ସ୍ୱରୂପ

ଅର୍ପଣ କଲି ।

—ସୀତାଦେବୀ

# ଅଭିମତ

ଆପଣାର ରଚନା ସମ୍ବନ୍ଧରେ ଅଭିମତ ପ୍ରକାଶ କରିବା ଯେତେ ସହଜ, ସେତେ ଜଟିଳ ମଧ୍ୟ । କାହିଁକି ନା ଲେଖି ଲେଖି ଭାବପ୍ରବଣତାରେ ଅତ୍ୟୁକ୍ତି ମଧ୍ୟ ପ୍ରକାଶ ହୋଇଥାଏ । ଭାବୁକ କଳ୍ପନା କରେ, ସେ କଳ୍ପନାକୁ ମୂର୍ତ୍ତି କରି ଗଢ଼ିବା ନିମନ୍ତେ ଆବଶ୍ୟକ ହୁଏ ପ୍ରଚୁର ପରିମାଣରେ ଭାଷାରସ । ବିଷୟକୁ ଭାବ-ଗୌରବରେ ସମୁଜ୍ଜ୍ୱଳ କରିବା ନିମନ୍ତେ ଲେଖକର ପ୍ରାଣରେ ନିବିଡ଼ ପ୍ରେମ ଭକ୍ତିର ପରାକାଷ୍ଠା ରହିବା ବଡ଼ ପ୍ରୟୋଜନ, ପୁଣି ତତ୍ ସହିତ ଜ୍ଞାନ-ଧନର ଆବଶ୍ୟକତା ରହିଛି । ଅତଏବ ସାହିତ୍ୟ-ସୃଷ୍ଟି ଯେ କେତେବଡ଼ ମହତ୍ କର୍ମ, ସେ କଥା ଚିନ୍ତା କଲେ ମନ ବିସ୍ମୟବିହ୍ୱଳ ହୋଇଉଠେ ।

ସେଇ ବିସ୍ମୟ ସ୍ମରଣ କରାଇଦିଏ ଅକ୍ଷରର ସୃଷ୍ଟିକର୍ତ୍ତା ମହାମାନବବୃନ୍ଦଙ୍କୁ ।

'ଜନ୍ମତିଥି' ନାଟକ ସେଇ ଈରମାନବଙ୍କ ଉଦ୍ଦେଶ୍ୟରେ ଅର୍ପିତ ଗୋଟିଏ ପୂଜାଫୁଲ ।

ଦେଶର ସ୍ୱାଧୀନତା ଆନ୍ଦୋଳନ ସମୟରେ ଯେଉଁ ତ୍ୟାଗୀ ମହାପୁରୁଷଗଣ ଦେଶକୁ ପରାଧୀନତା-ପାଶରୁ ମୁକ୍ତ କରିବା ନିମନ୍ତେ ଆପଣା ଆପଣାର ପବିତ୍ର, ମୂଲ୍ୟବାନ ଜୀବନ ପଣ କରି

ଦେଇଥିଲେ, ସେଇମାନଙ୍କ ଅପରାଜେୟ ଶକ୍ତି ସ୍ମରଣ କରି ମନରେ ଯେଉଁ ଅସୀମ ଶ୍ରଦ୍ଧା ଜାଗ୍ରତ ହୋଇଥିଲା, ତାହା ହିଁ ମୋର କ୍ଷୁଦ୍ର 'ଜନ୍ମଭୂମି'ରେ ନିହିତ କରିଦେଇଛି ।

ବର୍ତ୍ତମାନ ଦେଶର ରଚନାଶକ୍ତି ବଳିଷ୍ଠ ହୋଇଉଠିଛି । ସ୍ଥାନେ ସ୍ଥାନେ ସେ ଶକ୍ତିର ତେଜୋଦୀପ୍ତ ମୂର୍ତ୍ତି ଦେଖି ଆପଣାର ଅପାରଗତାରେ ମସ୍ତକ ନତ ହୋଇଯାଉଛି ଅତୀତ ଯୁଗର ମହାପୁରୁଷମାନଙ୍କ ପଦଚିହ୍ନ ତଳେ ।

'ଜନ୍ମଭୂମି' ସାହିତ୍ୟ-ରାଜ୍ୟର ସମୃଦ୍ଧିସାଧନ କରିବ କି ନାହିଁ ସେ ଚିନ୍ତା ନ କରି କେବଳ ଆତ୍ମାର ଅହେତୁକୀ ଆବେଗଟିକକୁ ହିଁ ପ୍ରକାଶ କରିଦେଇଛି । ଦେଶର ସହୃଦୟ ପାଠକ-ପାଠିକାଙ୍କର 'ଜନ୍ମଭୂମି' ଉପରେ ଶୁଭ ଦୃଷ୍ଟି ପଡ଼ୁ—ଏହା ହିଁ ସବିନୟ ନିବେଦନ ।

ସୀତାଦେବୀ ଖାଡ଼ଙ୍ଗା
କଟକ

---

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

(ସ୍ଥାନ—ଶିବସୁନ୍ଦରଙ୍କ ବାସଗୃହ । ସମୟ ମଧ୍ୟାହ୍ନ)

ଶାନ୍ତ—(ପ୍ରବେଶ) (ବୟସ ଆନୁମାନିକ ଷାଠିଏ । ଦେଖିଲେ ଏକ ସମୟରେ ସେ ମୁହଁରେ ଲାବଣ୍ୟ ଭରି ରହିଥିବା ମନେହୁଏ) (ପରିଧାନ ମଠା ଶାଢ଼ୀ) ଗାୟତ୍ରୀ ! ଗାୟତ୍ରୀ ! ନିତାନ୍ତ ଶ୍ରେଷ୍ଠ ପିଲଟା ନା ! ଏକା ସମ୍ଭାଳି ନପାରି ବୋଧହୁଏ ଶୋଇ ପଡ଼ିଲା । ଘରୁ ବାହାରିଲା ବେଳେ ଶିବଙ୍କୁ ବାରମ୍ବାର କରି କହିଥିଲି । ବାପ ! ଆଜି ତୋର ଜନ୍ମତିଥି । ପୂଜାବିଧି ହେବ ଟିକିଏ ସଅଳ ଚାଲି ଆସିବୁ ବୋଲି । ମୁଣ୍ଡ ଉପରକୁ ଖରା ଆସିଲାଣି, ଏ ପର୍ଯ୍ୟନ୍ତ ତାର ସମୟ ହୋଇନାହିଁ । ତାର ସେ ଅଧ୍ୟାପନା କାର୍ଯ୍ୟରେ ତ ତନ୍ମୟ ହୋଇ ରହିଥିବ । ବୟସ ହେଲା, ଘରକୁ ବୋହୂ ଆସିଲା, ନିଜର ଶରୀର କଥା ସଂସାର ଆଡ଼କୁ ଯଦି ଟିକିଏ ଦୃଷ୍ଟି ଦିଅନ୍ତା.........

ଗାୟତ୍ରୀ—(ପ୍ରବେଶ) (ପଛରୁ) ବୋଉ ମୋତେ ଡାକିଲୁ ! ବଡ଼ାଟା ତିଆରି କରି ଦେଉଥିଲି—"

ଶାନ୍ତ—ଦେଖୁଛୁ ତ ମା, ଶିବୁ କଣ କଲା, କହୁଥିଲା ଚଞ୍ଚଳ ଫେରିବୁ ବୋଲି, ଆସିଲା ? ମୁଗ୍ଧ ଦୃଷ୍ଟିରେ ଶିଷ୍ୟ ମଣ୍ଡଳୀଙ୍କୁ ଅନାଇଁ ରହୁଥିବ । ଆଜ ତାର ଜନ୍ମଦିନ ବୋଲି ମନେ ରଖିଥିବ କି ନାହିଁ ସନ୍ଦେହ ! ନା ଭାବିଲା ସଂସାର କଥା, ନା ଶରୀର ସମ୍ବନ୍ଧରେ ଚିନ୍ତାକଲା । ଆଜ ଉପନିଷଦ ପଢ଼ାଇବା କଥା ଥିଲା, ପଢାଉ ପଢ଼ାଉ ଆତ୍ମ ବିସ୍ମୃତ ହୋଇ ରହିଯାଇ ଥିବ—"

ଗାୟତ୍ରୀ—(ଆଦର ଭାବରେ) ବୋଉ ! ମୁଁ ଜାଣେ ଆପଣଙ୍କର ଏ ଉତ୍କଣ୍ଠା ବଡ଼ କୃତ୍ରିମ । ପୁଅଙ୍କ ଉପରେ ବତ୍ସଳତାଟିକି ପ୍ରକାଶ କରିବା ନିମନ୍ତେ ଆପଣ ସବୁବେଳେ ବ୍ୟଗ୍ର ହୋଇ ବସିଥାନ୍ତି । ଆପଣମାନେ କ'ଣ ଯେ—ଭାବନ୍ତି, ଶରୀର-ସଂସାର କଥା ଭାବିବାକୁ ଅବସର ନ ଥାଏ । ମୋର ମନେ ହେଉଛି ବୋଉ ! ଆପଣମାନଙ୍କ ପାଖରେ ରହି ମୋର ମନ ସମ୍ପୂର୍ଣ୍ଣ ରୂପେ ପରିବର୍ତ୍ତିତ ହୋଇ ଯାଇଛି । ଆପଣମାନଙ୍କୁ ମୁଁ ଆଉ ମନୁଷ୍ୟ ରୂପରେ ଦେଖିପାରୁ ନାହିଁ । ଆପଣଙ୍କ ପଦସେବା କଲାବେଳେ ମୋର ମନେ ହେଉଛି ସରସ୍ୱତୀ ମାତାଙ୍କ ପାଦରେ ହାତଦେଇ ବସିଛି । ସେତେବେଳେ ମୋର ସର୍ବାଙ୍ଗ ପୁଲକ ଉଠୁଛି ବାରମ୍ବାର । (ପାଦଛୁଇଁ) ଆପଣଙ୍କର ଏ ପଦସେବାହିଁ ମୋ ଜୀବନର ପରମକର୍ମ, ପରମଧର୍ମ ହେଉ ଏଇ ଆଶୀର୍ବାଦ ମୋତେ ଦିଅନ୍ତୁ ବୋଉ !

ଶାନ୍ତ—(ମଥାରେ ହାତରଖି) (ଆଦର ଆବେଗରେ) (ହସି) ମା' ମୋର ଗାୟତ୍ରୀ, ଆସିଲୁ ମା' ବିଷ୍ଣୁ ସହସ୍ରନାମଟା ପଢ଼ିଦେବୁ—"

ଗାୟତ୍ରୀ—ଆପଣ ଏଇକ୍ଷଣି ପୂଜାଘରେ ବସି ସହସ୍ରନାମ ପଢ଼ୁଥିଲେ ।

ଶାନ୍ତ—(ପିଠିରେ ହାତରଖି) (ହସି) ଥରେ ପଢ଼ିଛୁ ଯେ, କିନ୍ତୁ ଜାଣିଛ ତ ଗାୟତ୍ରୀ ମା, ତୋ ମୁହଁରୁ ଆଉଥରେ ଶୁଣିବା ଲୋଭଟା ସମ୍ବରଣ କରି ହେଉ ନାହିଁ । ତୋ ମୁହଁରୁ ଧ୍ୟାନମନ୍ତ୍ରଟି ଶୁଣୁ ଶୁଣୁ ମୋର ମନେ ହେଉଛୁ, ଶିବୁ ମୋର ଧ୍ୟାନମନ୍ତ୍ର ପଢ଼ି ବସିଛୁ । ( ଚିବୁକ ସ୍ପର୍ଶ କରି ) ମା ମୋର ଏକ ରୂପରେ ଦୁଇ ହୋଇ ଦେଖାଦେଉଛୁ ମୋ ଆଖି ଆଗରେ । ଜାଣୁଛ ଗାୟତ୍ରୀ ମା ! ଶିବୁ ମୋର ସ୍ୱୟଂ ବ୍ରହ୍ମା । ତାକୁ ମୁଁ ବ୍ରହ୍ମବହାଣ୍ଡ ବୋଲି ମନେ ମନେ ଡାକେ । ତା ଦେହ ମୁହଁରେ ଗୋଟାଏ ବ୍ରହ୍ମତେଜ ଫୁଟି ବାହୁଛି । ତାକୁ ଚାହିଁ ଦେଲେ ସମୟେ ସମୟେ ମୁଁ ଉତ୍ସନ୍ନ ହୋଇଯାଏ ।

ଗାୟତ୍ରୀ—ଆପଣ ବସନ୍ତୁ ବୋଉ ! ମୁଁ ବଷ୍ଟୁ ସହସ୍ରନାମ ବହିଟା ଧରି ଆସୁଛି । ( ପ୍ରସ୍ଥାନ )

ଶାନ୍ତ – କ'ଣ କରିବ ଅକାରଣରେ ମନଟା ଆକୁଳିତ ହୋଇ ଉଠୁଛି । ଚକିତ ହୋଇ ଦେଖୁଛି, ମନରେ ଭୟ ଜନ୍ମୁଛି । ମୋର ସେଇ ଅମୂଲ୍ୟ ଧନଟିକ କେଉଁଆଡ଼େ ହଜିଯିବ ବୋଲି ମନ ପ୍ରାଣ ସ୍ତବ୍ଧ ହୋଇ ଉଠୁଛି ।

ଗାୟତ୍ରୀ—(ମାତୃ ସୋହାଗରେ ଅଳିକରି) ବୋଉ ! ଏଇ ମୁଁ ଆସୁ ଆସୁ ଆପଣ କ'ଣ ଗୁଡ଼ାଏ ଭାବୁଛନ୍ତି । ମୁହଁ ଦେଖିଲେ ମନେ ହେଉଛି ମୁହଁରେ ଯେପରି ବେଦନାର ମାଧୁର୍ଯ୍ୟ ବୋଳି ହୋଇ ଯାଇଛି ।

ଶାନ୍ତ—(ଚିବୁକ ସ୍ପର୍ଶ କରି ମୁହଁକୁ ଚାହିଁ) ଗାୟତ୍ରୀ ମା, ତୁ ଯେ ମୋର ବାଣୀ ଦେବୀଙ୍କର ବର । ତୋତେ ମୁଁ ବଧୂ

ରୂପେ ପାଉଛି, ଜନ୍ମ ଜନ୍ମର ତପ ବଳରେ । ତୋତେ ଦେଖିଲେ ମୋର ମନେ ହେଉଛି, ଲକ୍ଷ୍ମୀ ସତ୍ୟସ୍ୱର୍ଣ୍ଣ ଉଦୟେ ଏଇ ରୂପ ଧରି ମୋର ଭଙ୍ଗା ଘରକୁ ଆସିଛନ୍ତି । ଆଖି ଆଗରୁ କ୍ଷଣେ ଅନ୍ତର ହୋଇଗଲେ ମୋର ପ୍ରାଣ ଆଉ ମନ ସବୁ ପୀଡ଼ିତ ହୋଇ ଉଠୁଛି । ତୋର ଦେହ ପାଖକୁ ବସି ଅନୁଭବ କରୁଛି ବିରହ ବେଦନା ।

ଗାୟତ୍ରୀ—(ଆବେଗରେ) ଆପଣଙ୍କର ସ୍ନେହ ଯେ ମୋର ଅମୂଲ୍ୟ ସମ୍ପଦ । କେଉଁ ଭାବରେ ଭାଷା ଦେଇ ମୁଁ ସେ କଥା ପ୍ରକାଶ କରିବ ବୁଝି ପାରୁ ନାହିଁ—”

ଶାନ୍ତ—(ହସି) ତୋର ଏଇ ପ୍ରକାଶ ଭଙ୍ଗିରେ ହିଁ ଯେ ବାଣୀ ଦେବୀଙ୍କର ନୟନ ସୁଧା ଭରି ରହିଛି । ତୁ ଚେଷ୍ଟାକରି ମୋତେ ବୁଝାଇବା ଅଉ ଆବଶ୍ୟକ ନାହିଁ । ବସେ ମା ପଢ଼େ, ମୁଁ ଶୁଣୁଛି ।

ଗାୟତ୍ରୀ—ଆପଣ କିନ୍ତୁ ମନ ଦେଇ ଶୁଣିବାକୁ ହେବ । ଏଠି ବସି ମୁଁ ପଢୁଥିବି ଆପଣ ତେଣେ ଆପଣଙ୍କ ପୁଅଙ୍କ କଥା ଭାବୁ ଥିବେ—”

ଶାନ୍ତ—(ବସି, ବସେଇଦେଇ) ହେଉ ତେବେ, ମୁଁ କେବଳ ଶୁଣିବି । ଶିବୁର କଥା ଆଉ ଭାବିବି ନାହିଁ ।

ଗାୟତ୍ରୀ—ଶାନ୍ତାକାରଂ ଭୁଜଗ ଶୟନଂ ପଦ୍ମନାଭଂ ସୁରେଶଂ
ବିଶ୍ୱାଧାରଂ ଗଗନ ସଦୃଶଂ ମେଘବର୍ଣ୍ଣଂ ଶୁଭାଙ୍ଗ,
ଲକ୍ଷ୍ମୀକାନ୍ତଂ କମଳ ନୟନଂ ଯୋଗିଭି-ର୍ଧ୍ୟାନ ଗମ୍ୟମ୍ ।

ଶିବ—(ପ୍ରବେଶ କରୁକରୁ) ବନ୍ଦେ ବିଷ୍ଣୁଂ ଭବଭୟହରଂ ସର୍ବ ଲୋକୈକ ନାଥମ୍ ।

ଶାନ୍ତ—(ଅଗ୍ରସର ହୋଇ) ହଇରେ ଶିବୁ ! ତୋତେ ମୁଁ କହିଥିଲି ଆଜ ତୋର ଜନ୍ମତିଥି ଠିକ ଏ ଚଞ୍ଚଳ ଚାଲି ଆସିବୁ ବୋଲି ।

ଶିବୁ—ଆଜ ମୋର ଜନ୍ମଦିନ ବୋଲି ଆସିବା ଡେରି ହୋଇଗଲା । ପିଲାମାନେ ଆଉ ଅନ୍ୟ ଶିକ୍ଷକମାନେ ମୋତେ ଜନ୍ମ-ଦିନର ତାତ୍ପର୍ଯ୍ୟ ସମ୍ବନ୍ଧରେ ପଚାରିଲେ । ମୁଁ ଏକାଥରକେ ସ୍ତବ୍ଧ ହୋଇ ରହିଗଲି । ମୋର ମନେହେଲା ସେ ପ୍ରଶ୍ନର ଉତ୍ତରଟିହିଁ ମୋର ନବଜନ୍ମ । ବୋଉ ! ଆଜ ମୁଁ ବସ୍ତୁ ପୂ ବହ୍ୱଳ ହୋଇ ଭାବୁଛି, ମୁଁ ଜନ୍ମ ହେବାଠାରୁ ଅଠର ବର୍ଷର ଅଠରଟି ଜନ୍ମୋତ୍ସବ ପାଳନ କରିଥିଲୁ—”

ଶାନ୍ତ—(ଚିବୁକ ଧରି ପିଠିରେ ମଥାରେ ହାତ ବୁଲାଇ ଆଣି) ହଁ ରେ ବାପ ! ଆଜର ପରି ଅଠରଟି ଜନ୍ମଦିନ ଏଇ ଭାଦ୍ର ମାସର ଶୁକ୍ଳ ଦଶମୀ ଦିନ ପାଳନ କରି ଆସିଛୁ । ତା ପରେ ତୋର ପ୍ରବାସ ଯାତ୍ରା । (ଆବେଗରେ କଣ୍ଠରୋଧ) ।

ଶିବ—ନନାଙ୍କର ବିୟୋଗ, ଅନେକ କଷ୍ଟ ବାଧାବିଘ୍ନ ଅତିକ୍ରମ କରି ଆଜ ପୁଣି ଜନ୍ମ ଗ୍ରହଣ କରିଛି ଏ ପୃଥିବୀ ପୃଷ୍ଠରେ ।

ଶାନ୍ତ—(କୋଳାଗ୍ରତ କରି) (ଆବେଗରେ ହସି) ଏଇ ଘରେ ଏଇ ଘର ମାଟିରେ ପଅଣତିରିଶି ବର୍ଷ ତଳେ ଜନ୍ମ ହୋଇଥିଲୁ । ଆଜ ପୁଣି କପରି ଜନ୍ମହେଲୁ ବାପ—”

ଶିବ—ହଁ ବୋଉ ! ଆଜହିଁ ମୁଁ ଜନ୍ମହେଲି । ସେଦିନ ଜନ୍ମ ଗ୍ରହଣ କରିଥିଲି ମାତୃ ଗର୍ଭରୁ । ଆଜ ଜନ୍ମହେଲି ଅଜ୍ଞାନ ଅନ୍ଧକାର ଗର୍ଭରୁ ।

ଗାୟତ୍ରୀ—(ବିହ୍ୱଳ ଉଠିଯାଇ) ବୋଉ ! ଆପଣ ପୁଅକୁ ଧରି ଆଦର କରୁଛନ୍ତି । ମୁଁ ଆଉ ଏଠି କଣ କରିବି । ଯାଉଛି ପୂଜାର ଆୟୋଜନ କରିଦେବି । (ପ୍ରସ୍ଥାନ)

ଶିବ—ବୋଉ ! ମୋର ମନେ ହେଉଛି ମନୁଷ୍ୟ ପ୍ରତିଦିନ, ପ୍ରତି ମୁହୂର୍ତ୍ତରେ ଜନ୍ମ ହେଉଛି—"

ଶାନ୍ତ—(ପିଠିରେ ହାତ ବୁଲାଇ) ବାପ ମୋର ! ତୋ ନନା ଏଇପରି କଥାଗୁଡ଼ିଏ କହୁଥାନ୍ତି । (ହସି) ତାଙ୍କର ପର ଆଜ ତୁ କ'ଣ କହୁଛୁ ! ମୁଁ ସେଥିରୁ କିଛି ହେଲେ ବୁଝିପାରୁ ନାହିଁ । ମନୁଷ୍ୟ ପ୍ରତିଦିନ କିପରି ଜନ୍ମ ହୁଏ ମ ?

ଶିବ—ବୋଉ, ତୁ ଆହୁରି ବୁଝି ପାରୁନାହୁଁ । ମୁଁ ଭାବୁଥିଲି କଣ କି, ହଁ ଯଦି କହିବି ତୁ ହସିବୁ, ମୁଁ ଭାବୁଥିଲି—

ଶାନ୍ତ—କ'ଣ ଭାବୁଛୁ ବାପ !

ଶିବ—ଭାବୁଥିଲି ସେଇ ଅତୀତ କାଳର କଥା, ତୁ ମୋତେ ନୂଆଁ ପିନ୍ଧା ପିନ୍ଧାଇ ଚନ୍ଦନ ଚିତା ଲଗାଇ ରାଜକୁମାର ବେଶରେ ସଜାଇ ପିଢ଼ାରେ ବସାଇ ପୂଜା କରୁଥିଲୁ ! ମୋର ନିଜ ରୂପରେ ନିଜେ ମୁଗ୍ଧ ହୋଇଯାଏ, ମୋର ଭାବନା ହୁଏ, ମନେ ମନେ ବିଶ୍ୱାସ କରେ ତୁ ମୋତେ ଦେଖି କି ଗଭୀର ଆନନ୍ଦ, କି ଗଭୀର ତୃପ୍ତି ଅନୁଭବ କରୁଥିଲୁ, ସେ ଆନନ୍ଦ ଅନୁଭୂତ ଥିଲା ଆମର ଏଇ ଘରର ଆମ ତିନି ଜଣଙ୍କ ଭିତରେ । ପିଲାଦିନେ କେବଳ ତୋର ଆନନ୍ଦ ସହିତ ମୋର ଆନନ୍ଦ ମିଶି ରହିଥିଲା । ତା'ର ଭିତରୁ ମୁଁ ଅନୁଭବ କରୁଥିଲି, ମୁଁ ଯେପରି ଜଣେ ସ୍ୱତନ୍ତ୍ର ମନୁଷ୍ୟ, ମୋ ଭିତରେ ଦେଖେ ଗୋଟାଏ ବିଶେଷତ୍ୱ, ଗୋଟାଏ ବଡ଼ ଆଲୋକ, ମୁଁ ଜାଣେ ମୁଁ ହେବାର ଆନନ୍ଦ ମୋତେ ଅଧୀର କରିଦିଏ—"

ଶାନ୍ତ—ତୋ ଭିତରେ ସେଇ ଦିବ୍ୟ ଜ୍ୟୋତିଟିକୁ ମୁଁ ଅନୁଭବ କରିଛି ବାପ ! ମୁଁ ଯେତେବେଳେ ପୂଜାର ଧ୍ୟାନରେ

ବସେ, ଭଗବାନଙ୍କ ରୂପ ଖୋଜେ, ମୋର ସେ ଧ୍ୟାନ ନେତ୍ରରେ ତୋତେହିଁ ଦେଖେ । ଦେଖେ ତୋର ଏ ଶାନ୍ତି ଶରୀରରୁ ଦିବ୍ୟ ପ୍ରଭା ବିଚ୍ଛୁରିତ ହୋଇ ପଡୁଛି ଗୋଟାଯାକ ଦେଶରେ ।

ଶିବ— ବୋଉ, ମୋ ବୋଉ, ଆଜି ତୋ ପାଖରେ ପ୍ରକାଶ କରିବାକୁ ମୋର କୈଣସି ସଙ୍କୋଚ ନାହିଁ । କୈଶୋର କାଳରେ ତୁ ମୋତେ ରାଜକୁମାର ବେଶରେ ସଜାଇ ପୀଢ଼ାରେ ବସାଇ ପୂଜାକରୁ । ସେତେବେଳେ ମୁଁ ଭାବେ, ମୁଁ ଜଣେ ରାଜକୁମାର କମ୍ବା ଦେବଲୋକରୁ ଆସିଛି କୌଣସି ଦେବତା । ମୋର ପ୍ରାଣ ପଦ୍ମଟି ବିକାଶୋନ୍ମୁଖୀ ହୋଇ ଉଠେ ତୋର ଶୁଭ୍ର ଅଙ୍ଗୁଳିର ସ୍ପର୍ଶରେ ।

ଶାନ୍ତ—ମୋ ବାପ, ମୋ ଧନ ! ମୋହରି ମୁହଁର କଥାଟି ଉଠାଇ ନେଇ ତୁ ସବୁ କହି ଦେଉଛୁ ବାପ !

ଶିବ— ସାତବର୍ଷ ହେଲା ଜୀବନ ଯାତ୍ରା ଆରମ୍ଭ କରି ଏ ପର୍ଯ୍ୟନ୍ତ ମୁଁ ମୋର ପଥ ନିର୍ଦ୍ଦିଷ୍ଟ କରି ପାରି ନଥିଲି । ହୃଦୟ କନ୍ଦରରୁ ଭାବ ଧାରା ଇତସ୍ତତଃ ହୋଇ ବହି ଯାଉଥିଲା । ସେହି ଇତସ୍ତତତାରେ ମୁଁ ନିଜକୁ ବଡ ବିବ୍ରତ କରି ପକାଉ ଥିଲି । ଆଜି ଆକସ୍ମିକ ଭାବରେ ମୋର ଯାତ୍ରାପଥ ସୁନିର୍ଦ୍ଦିଷ୍ଟ ହୋଇଯାଇଛି । ମୋର ମନ ଆଜି ପର୍ଯ୍ୟନ୍ତ ଯେଉଁ ପଥ ଖୋଜିତ କରି ଆସୁଥିଲା, ସେଇ ପଥରେ ମୋର ଚିନ୍ତାଧାରା ସୁନିୟନ୍ତ୍ରିତ ହୋଇ ଗତି କରିବ ଏଣିକି । କିନ୍ତୁ ବୋଉ ! ଆଜିର ଏଇ ଅପୂର୍ବ ଭାବନା ମୋ ମନକୁ ତ କେବେ ସ୍ପର୍ଶ କରି ନଥିଲା । ଆଜି ମନରେ ଏପରି ଅଭ୍ୟୁଗ୍ର ଆକାଂକ୍ଷା ଜାଗ୍ରତ ହୋଇ ଉଠିଛି ଯେ

ଉଠୁଛି, କି ଗୋଟାଏ ମହତ କାର୍ଯ୍ୟ କରିବ । ମୋ ଦେଶ-ବାସୀ ଭାଇ ଭଉଣୀ ମୋର ଆଦର୍ଶରେ ଅନୁପ୍ରାଣିତ ହୋଇ ଆନନ୍ଦ ଅନୁଭବ କରିବେ—”

ଶାନ୍ତ—(ଆବେଗରେ) ମୋ ବାପ ! ତୁ ଆଜ ପର୍ଯ୍ୟନ୍ତ ଚିନ୍ତା କରି କରି ଯେଉଁ ମହାନ ପଥ ଆବିଷ୍କାର କରିଛୁ, ଭଗବାନ୍ ତୋତେ ସେହି ପଥର ପଥିକ କରନ୍ତୁ—”

ଶିବ—(ପଦ ସ୍ପର୍ଶ କରି) ତୁ ହିଁ ମୋର ଭଗବାନ୍, ବୋଉ ! ଆଜ ମୋର ମନେ ହେଉଛି, ମୁଁ ଜନ୍ମେହିଁ ମୋର ଦେଶ । ଏ ଦେଶର ମାତୃରୂପିଣୀ ଦେବତା ତୁ । ଆଶୀର୍ବାଦ ଦେ ବୋଉ—”

ଗାୟତ୍ରୀ—(ପ୍ରବେଶ) ବୋଉ, ଆପଣମାନେ ଏଠି ବସି କ’ଣ ସବୁ ଆଲୋଚନା କରୁଛନ୍ତି । ମୁଁ ତେଣେ ପୂଜା ଉପକରଣ ସଜାଇ ରଖି ଦେଇଛି, ଦେଖିବେ ଆସନ୍ତୁ । ଆଉ କ’ଣ ଯଦି ଅଭାବ ଥିବ—”

ଶାନ୍ତ—ବାପ, ତୁ ମୁହଁ ହାତ ଧୋଇ ଆସେ । ଯାଉଛି ପୂଜା ଘରକୁ (ପ୍ରସ୍ଥାନ)

ଶିବ—(ପଛରୁ) ବୋଉ ! ତୋର ତ ବିଷ୍ଣୁ ସହସ୍ର ନାମ ଶୁଣା ହୋଇ ନାହିଁ । ମୁଁ ଆସିଲା ବେଳକୁ ତୋର ବୋଧହୁଏ ବସି ପଢୁଥିଲୁ—”

ଶାନ୍ତ—(ଫେରି)(ହସି)ସହସ୍ର ନାମ ମୋର ସେଇ ସକାଳୁ ପଢ଼ା ହୋଇ ସାରିଲାଣି । ଗାୟତ୍ରୀ ମା ମୁହଁରୁ ଆଉ ଥରେ ଶୁଣିବ ବୋଲି ଲୋଭ କରି ବସି ଥିଲି । ତା ମୁହଁରୁ ଧ୍ୱନିଟି ବାହାରିଲେ ମୋର ମନେ ହୁଏ ସ୍ୱୟଂ ପଦ୍ମାସନା ସରସ୍ୱତୀ ତାଙ୍କର ବୀଣାଟି ବଜାଉଛନ୍ତି ।

ଗାୟତ୍ରୀ—(ସଲଜ୍ଜଭାବରେ ଶିବଙ୍କ ଆଡ଼କୁ ଅନାଇଁ ଦୃଷ୍ଟି ନତ କରି) ବୋଉ, ଆପଣ ମୋତେ ଏତେ ଭଲ ପାଉଛନ୍ତି ଯେ—ମୋର ସବୁ ଭୁଲ ତାଙ୍କୁ ଭଲ ଲାଗୁଛି । ତା ନହେଲେ ମୁଁ ଯେପରି ଏଣିକି ଅକ୍ଷର ଚେତେଣେ କରି ପଢ଼ୁଛି, କେହି ଶୁଣିବାକୁ ଇଚ୍ଛା କରିବେ ନାହିଁ—(ପ୍ରସ୍ଥାନ)

ଶାନ୍ତ—ତୋ କଥା ଶୁଣୁ ଶୁଣୁ ସବୁକଥା ଭୁଲ ଯାଇଥିଲି । ତୋର ସବୁ ବନ୍ଧୁମାନେ ଆପଣା ଆପଣା କର୍ମ ଧନ୍ଦାରେ କଟକରେ ଯାଇ ରହିଲେ । ମୋର ଆନନ୍ଦର ଅଂଶ ନେବାକୁ ଗାଁର କେତୋଟି ପିଲାଙ୍କୁ ଡାକିଛି । ତୋତେ କହିଥିଲି, ବଷ୍ଟୁମାଷ୍ଟ୍ରଙ୍କୁ ଡ଼ାକି ଦେବାକୁ, ଯାଉଛି ବଦୁକୁ ପଠାଇବି; ପିଲାଙ୍କୁ ଡାକି ଦେବ । ଆଜି ସେହିମାନେହିଁ ହେବେ ତୋର ସାଥି । (ପ୍ରସ୍ଥାନ)

ଗାୟତ୍ରୀ—(ପ୍ରବେଶ) (ଅଗ୍ରସର ହୋଇ ଶିବଙ୍କ ମୁଣ୍ଡର ବାଳ ଅଲିବଲି କରି) ଦେଖମ, ତୁମର ବାଳଗଣ୍ଡିକ ଏପରି ସୁନ୍ଦର ହୋଇଛି । (ଆଘ୍ରାଣ କରି) ଫୁଲ ପେନ୍ଥାଟିଏ ଧରିଲା ପରି ଲାଗୁଛି । (ମୁହଁକୁ ଚାହିଁ) ତୁମେ ଏତେ ସୁନ୍ଦର !

ଶିବ—(ଗାୟତ୍ରୀଙ୍କ ଚିବୁକ ଧରି) (ସୋହାଗରେ) ଆଉ ତୁମେ ! ତୁମେ ମୋର ଗାୟତ୍ରୀ ମନ୍ତ୍ର । ତୁମ ମୁହଁ ଆଖିରେ ଅଛି, ଛନ୍ଦ ଲୋକର ସୌନ୍ଦର୍ଯ୍ୟ ସୁଧା । ମୁଁ ଯେଉଁଠି ଥାଏ ତୁମର ପ୍ରେମ ସ୍ମରଣ କଲାକ୍ଷଣି ମୋର ବୁଦ୍ଧି ଶକ୍ତି ଉଜ୍ଜ୍ୱଳତର ହୋଇ ଉଠେ । ମୋର ମନେ ହୁଏ ଯେ, କେଉଁ ଅଜ୍ଞାତ ଯୁଗରେ ତୁମେହିଁ ଥିଲ ମୋର ପ୍ରାଣର

ଅତି ପ୍ରିୟ । ତୁମକୁ ଦେଖି ମୁଁ ରଚନା କରିଥିଲି । ଗାୟତ୍ରୀ ମନ୍ତ୍ର—”

ଗାୟତ୍ରୀ—(ପିଠିରେ ହାତ ରଖି ମୁହଁକୁ ଚୁହିଁ) ମୁଁ ତୁମକୁ ତୁମର ସେଇରଚିତ ମନ୍ତ୍ରରେ ପୂଜା କରୁଥିଲି ଅତୀତ ଯୁଗରେ । ତୁମେ ମୋର । ଏକାନ୍ତ ଭାବରେ ମୋର । ଜନ୍ମ ଜନ୍ମ ଧରି ତୁମେ ମୋର ହୋଇ ରହିଛ । ଏ ଜନ୍ମରେ ତୁମକୁ ପୁଣି ପାଇଛି ।

ଶାନ୍ତ—(ପ୍ରବେଶ କରୁ କରୁ) ଶିବୁ, ଯାଉଛୁ ମୁହଁ ହାତ ଧୋଇ—

ଗାୟତ୍ରୀ—(ପ୍ରସ୍ଥାନ)

ଶିବ—(ସଲଜ୍ଜ ଭାବରେ) ହଁ ବୋଉ ଯାଉଛି । ଯାଉ ଯାଉ ଗାୟତ୍ରୀ ଆସି କ'ଣ କେଜାଣି କହୁଥିଲା । ତା କଥା ଶୁଣୁଥିଲି । ମୁଁ ବିସ୍ମିତ ହୋଇ ଭାବୁଛି । ଏଇତ କେତୋଟା ଦିନ ହେଲା ସେ ଆମ ଘରକୁ ଆସିଛି । ଏଇ ଅଳ୍ପ ସମୟ ଭିତରେ ଆଉ ଏତେ ଅଳ୍ପ ବୟସରେ ଏତେ କଥା ସେ ଜାଣି ପାରିଲା କିପରି ?

ଶାନ୍ତ—ଅତି ତୃପ୍ତିରେ ମୋ ମନ ଆଜି ବିହ୍ୱଳ ହୋଇ ଉଠୁଛି । ସେ ଯେ ତୋର ଧର୍ମ ପତ୍ନୀ ଶିବ ! ଯଦି ବା ତାପା ତାର ମାଜିଷ୍ଟ୍ରେଟ ହୋଇଛନ୍ତି । ଗାୟତ୍ରୀର ମା ଯେ ବାଣୀଭୂଷଣ ଆଚାର୍ଯ୍ୟଙ୍କ କନ୍ୟା । ଅଜାଙ୍କ ପାଖରେ ରହି ଜ୍ଞାନ ଅର୍ଜନ କରିଛି——

ଗାୟତ୍ରୀ—(ପ୍ରବେଶ) ବୋଉ ! ଆପଣମାନଙ୍କ କଥା ଆଜି ଆଉ ଶେଷ ହେବ ନାହିଁ ।

ଶାନ୍ତ—ଚନ୍ଦନ ଟିକଏ ଘୋରି ଦେଇଛୁ ତ ମା ? ଶିବୁର ନୂଆଁ
　　ଧୋତି ଗୁଦର—

ଗାୟତ୍ରୀ—ସବୁତ ରଖି ଦେଇଛି ବୋଉ—

ଶାନ୍ତ— ଯାଉଛି ପୂଜା ଆରମ୍ଭ କରି ଦେବା ଆସେ ବାପ ! (ପ୍ରସ୍ଥାନ)

ଶିବ—(ଅଗ୍ରସର ହୋଇ ଆସି) ଗାୟତ୍ରୀ । କ'ଣ କହୁଥିଲ,
　　ଆଉଥରେ କହ ଶୁଣିବାକୁ ମୋର ବଡ଼ ଇଚ୍ଛା ହେଉଛି ।
　　ତୁମେ କଥା କହିବା ସମୟରେ ମୋର ମନେ ହେଉଛି,
　　ତୋହର କଣ୍ଠରୁ ଯେପରି ଝରି ଯାଉଛି କାବ୍ୟ ଅମୃତ ଧାରା ।

ଗାୟତ୍ରୀ—ଏସବୁ ତୁମର କଳ୍ପନା, ତୁମ ମୁହଁରୁ କଥା କହୁ କହୁ
　　ଗୀତ ସୁଧା ଧାରା ଝରି ପଡ଼ୁଛି ବୋଲି—

ବସ୍ତୁ ମାଷ୍ଟ୍ରେ—(ନେପଥ୍ୟରୁ) ଶିବ ବୋଉ ! ଶିବ ବୋଉ !

ଗାୟତ୍ରୀ—ମାଷ୍ଟ୍ରେ ଆସିଲେଣି (ପ୍ରସ୍ଥାନ)

ଶିବ—ଆସନ୍ତୁ ଆଜ୍ଞା ।

ବସ୍ତୁ—(ପ୍ରବେଶ)

ଶିବ—ବୋଉ କହୁଥିଲା, ଆପଣଙ୍କୁ ଡ଼ାକ ଦେବାକୁ—

ଶାନ୍ତ—(ପ୍ରବେଶ) ହଇରେ ଶିବ ତୁ ଆହୁରି ଯାଇନାହୁଁ— ?

ଶିବ—(ପ୍ରସ୍ଥାନ କରୁ କରୁ) ମାଷ୍ଟ୍ରେ ଆସିଲେ—(ପ୍ରସ୍ଥାନ)

ଶାନ୍ତ—ଆଜ ଶିବୁର ଜନ୍ମ ଦିନ ମାଷ୍ଟ୍ରେ ! ଶିବକୁ କହୁଥିଲି ।
　　ଆପଣଙ୍କୁ ଡାକ ଦେବାକୁ, ଆପଣ କେତେ ଦିନ ହେଲା
　　ଘର ଆଡ଼େ ଆସି ନାହାଁନ୍ତି । ଶିବୁ ଆପଣଙ୍କୁ ଡାକ ନାହିଁ ?

ବସ୍ତୁ—(ବସିପଡ଼ି) ଡ଼ାକ ନାହିଁ ବୋଲି ଅଭିମାନ କରି ଚୁଲି ଜାଳି
　　ଘାତ ରାନ୍ଧିବାକୁ ଯାଉଥିଲି । କାଲିର ବର୍ଷାରେ କାଠ

ଟଣ୍ଡିକ ଝିଦା ହୋଇ ପଡ଼ିଥିଲି । ସେ କାଠରୁ ଧୂଆଁ ବାହାରିଲା ନାହିଁ । ଶେଷରେ ବିରକ୍ତ ହୋଇ ହାଣ୍ଡି ସୁଦ୍ଧା ଭାଙ୍ଗି ଦେଇ ଚାଲି ଆସିଲି । ଶିବର ଜନ୍ମ ଦିନରେ ମୁଁ କି ଅଭିମାନ କରି ରହିପାରେ, ଶିବ ବୋଉ !

ଶାନ୍ତି—(ହସି) ଅଗ୍ନି ଦେବତା ଆପଣଙ୍କର ଅଭିମାନ ଭାଙ୍ଗି ଦେଲେ ନା ! (ଟିଖିର ଭାବରେ) ଆପଣ ଜାଣନ୍ତି ଆପଣଙ୍କର ଶୁଭ ଇଚ୍ଛାରେ ଶିବୁର ବିଦ୍ୟା ଶିକ୍ଷା ସୁସମ୍ପନ୍ନ ହୋଇଛି । ଆପଣ ତାକୁ ବିଦ୍ୟାବଳ ଅନୁଭବ କରିବାକୁ ଶିକ୍ଷା ଦେଇ ଆସିଛନ୍ତି—"

ବିଷ୍ଣୁ—(ହସି) ମୋର ଯାହା ବିଦ୍ୟାବଳ ବୋଇଲେ ଠାରୁ ଗୋପୀ-ଭାଷା ପର୍ଯ୍ୟନ୍ତ ସୀମାବଦ୍ଧ । ଶିବ ଏବେ ଯେଉଁ ସ୍ତରକୁ ଗଲଣି, ମୁଁ ତାକୁ ମୋର ଗୁରୁ ବୋଲି ମନେ ମନେ ଭକ୍ତି ଦେଉଛି—"

ଶାନ୍ତି—ଶିବ ଆପଣଙ୍କର, ଆପଣ ତାକୁ ଆଶୀର୍ବାଦ ଦିଅନ୍ତୁ—"

( ପାଞ୍ଚ ଜଣ କିଶୋରଙ୍କ ପ୍ରବେଶ )

ଶାନ୍ତି—ଏଇଯେ ପିଲାଏ ଆସି ଗଲେଣି ଯାଉଛି; ପୂଜାଟା କରିଦେବି । (ପ୍ରସ୍ଥାନ)

ଗାୟତ୍ରୀ—(ପ୍ରବେଶ) (ବିଷ୍ଣୁଙ୍କୁ ପ୍ରଣାମ)

ବିଷ୍ଣୁ—(ମଥାଛୁଇଁ) ମା ତୋର ସାକ୍ଷାତ୍ ଗାୟତ୍ରୀ । ଭଗବାନ୍ ତୁମକୁ ସୁଖୀ କରନ୍ତୁ ।

ଗାୟତ୍ରୀ—ଆପଣ ଏତେ ଡେରି କରି ଆସିଲେ, ବଡ଼ ଖରା ଆଜି, ସ୍କୁଲଘରୁ ଆସିବାକୁ କଷ୍ଟ ହୋଇଥିବ ।

ବିଷ୍ଣୁ—(ହସି) ରୌଦ୍ରତାପ ଠାରୁ ଅଗ୍ନିତାପ ବଳପଡ଼ିଲା । ବୁଢ଼ା ମନୁଷ୍ୟ ବୋଲି ଜଠରାନଳର ତ ଦୟା ହେଉନାହିଁ । ଶୁଣିଲେ ତୁମେ ହସିବ, ଚୁଲିଟା ଜଳିଲା ନାହିଁ ବୋଲି ହାଣ୍ଡି ଭାଙ୍ଗି-ଦେଇ ଚାଲିଆସିଲି । ଭଗବାନଙ୍କର ଆଦେଶ ! ଆଜିର ପରି ଦିନରେ ଶିବୁକୁ ଆଶୀର୍ବାଦ ନ ଦେଇ ମୁଁ ସେଠି ଖାଇଥାନ୍ତି କିପରି !

ଗାୟତ୍ରୀ—(ସମସ୍ତଙ୍କର ପୀଢ଼ା ପାରି ଦେଇ) ବସନ୍ତୁ ବୋଉଙ୍କର ପୂଜା ହୋଇ ଯାଇଥିବ । ଖାଇବା ନେଇ ଆସିବି । (ପ୍ରସ୍ଥାନ)

(ନବବସ୍ତ୍ର ପରିହିତ ପୁଷ୍ପ ଚନ୍ଦନ ଚର୍ଚ୍ଚିତ ଶିବସୁନ୍ଦର । (ଶାନ୍ତି ପ୍ରବେଶ)

ଶିବ—(ବିଷ୍ଣୁଙ୍କ ପଦସ୍ପର୍ଶ)

ବିଷ୍ଣୁ—(ମଥାଛୁଇଁ) (ଭାବାବେଶରେ ହସି) ଶିବ ଯେ ମୋର ସତ୍ୟ ଶିବ । ଏବେଶଟି ଯେ ଦେଖିବାକୁ ଭାଗ୍ୟରେ ଥିଲା ।

ଶାନ୍ତି—ଆପଣ ଆଶୀର୍ବାଦ ଦିଅନ୍ତୁ । ସେ ମୋର ଏ ସଂସାରର ସତ୍ୟ ଶିବ ହେଉ । ବଡେ ବାପ, ଆଜି ସାଥୀ, ଗୁରୁ ଏମାନଙ୍କ ସହିତ ଭୋଜନ କରିବୁ !

ଗାୟତ୍ରୀ— (ଆହାର ସାମଗ୍ରୀ ନେଇ ପ୍ରବେଶ) (ସମସ୍ତଙ୍କୁ ଦେବା)

ବିଷ୍ଣୁ—ବାପୁ ଭାଇନା ଥିଲେ ଦେଖିଥାନ୍ତେ, ତାଙ୍କର ଏକମାତ୍ର ସନ୍ତାନର ବଧୂକୁ । ମା ଯେ ସ୍ୱୟଂ ଅନ୍ନପୂର୍ଣ୍ଣା, ମା ସରସ୍ୱତୀ ଏ ଘରକୁ ଆସିଛନ୍ତି । ମା'ର ପ୍ରତି ପଦ କ୍ଷେପରେ ଏ ଘରେ ପଦ୍ମଫୁଲ ଫୁଟିବ ଶିବ ବୋଉ !

ଶିବ—ଆରମ୍ଭ କରନ୍ତୁ ମାଷ୍ଟ୍ରେ । ବଂଶୀ, କୃଷ୍ଣ ତୁମେ ସମସ୍ତେ ଆରମ୍ଭ କର—

( ସମସ୍ତେ ଭୋଜନରତ )

ବିଷ୍ଣୁ—(ଖାଇ ଖାଇ) କି ସୁନ୍ଦର ପିଠା ହୋଇଛି ! ଅନ୍ନପୂର୍ଣ୍ଣାଙ୍କ ହାତର ପ୍ରସାଦ ଏ !

ଗାୟତ୍ରୀ—ବୋଉ ! ଆଜ୍ଞା ସ୍କୁଲଘରେ ନଜେ ରାନ୍ଧି ଖାଉଛନ୍ତି । ତାଙ୍କର ବଡ଼ କଷ୍ଟ ହେଉଥିବ,ଆମର ଏଠି ଖାଆନ୍ତେ—"

ଶାନ୍ତ—(ହସି) ଆପଣଙ୍କର ବୋହୂ ଗୁରୁ ଶ୍ୱଶୁରଙ୍କୁ ଆମନ୍ତ୍ରଣ କରୁଛି । ଆସନ୍ତୁ ।

ବିଷ୍ଣୁ—ସେ ମଲାଠୁ ହାତରେ ମୁଠେ ଫୁଟାଇ ଖାଉଛି—"

ଗାୟତ୍ରୀ—ଆପଣ ଆଜଠୁ ଆମ ଘରେ ଖାଇବେ । ତା ନ ହେଲେ ମୋର ବଡ଼ ଦୁଃଖ ହେବ । (ସମସ୍ତଙ୍କୁ ପରିବେଷଣ କରିବା) (ବିଷ୍ଣୁଙ୍କୁ) ଆଜ୍ଞା ଆପଣଙ୍କୁ କେଉଁ ଜନିଷଟା ଭଲ ଲାଗୁଛି କହନ୍ତୁ, ଆଉ ଟିକଏ ଆଣିଦେବି—

ବିଷ୍ଣୁ—ତୁମର ଏ ତରକାରି ବଡ଼ ଭଲ ହୋଇଛି,ଆଉ ଖିରଟା—'

ଗାୟତ୍ରୀ—(ଦେଇ) ଚଟଣି ଦେବି ।

ବିଷ୍ଣୁ—(ତୃପ୍ତିରେ ଖାଉ ଖାଉ) କଅଁା, ପିଠା ଖାଇ ଖାଇ ପାଟିଟା ବିସ୍ୱାଦ ହୋଇ ରହିଥିଲା, ଅମୃତ ଭୋଜନ ମିଳିଗଲା ଆଜ ।

ଶାନ୍ତ—ବଂଶୀ ! ବାପ ଆଉ କ'ଣ ଦେବି କହ ।

ବଂଶୀ—ଆମେ ସମସ୍ତେ ଏତେ ଖାଇଲୁଣି ଯେ ନଉଠାଇ ମା, ଏ ବେଳା ଆଉ ସ୍କୁଲକୁ ଯାଇ ପାରିବୁ ନାହିଁ—"

ଶିବ—ମାଷ୍ଟ୍ରେ, ଆଜ ଉପରବେଳାଟା ପାଠଶାଳା ଛୁଟୀ କରିଦିଅନ୍ତୁ ।

ବସ୍ତୁ—(ଚଟଣି ଖାଇ ଖାଇ) ମୁଁ ତ ସେଇ କଥା ଭାବୁଥିଲି । ପେଟର ଅବସ୍ଥା ଯାହାହେଲାଣି । (ଉଠିପଡ଼ି) ମୁଁ ଏଇ ଦାଣ୍ଡଘରେ ଶୋଇ ପଡ଼ିବ ।

ଶାନ୍ତ—ଚାଲନ୍ତୁ କୁଣ୍ଡରେ ହାତ ଧୋଇବେ ।

( ସମସ୍ତଙ୍କ ପ୍ରସ୍ଥାନ )

ଗାୟତ୍ରୀ—ଆଜ ମୋର ଦେହ ମନ ସବୁ କ'ଣ ହେଉଛି । ଏଇତ ସେ ଦିନ ଦେଖିଥିଲି, ବବାହ ବେଦୀ ଉପରେ ଚନ୍ଦନ ଚର୍ଚ୍ଚିତ ମୂର୍ତ୍ତି । ତାଙ୍କ ମୁହଁରୁ କଥା ପଦେ ଶୁଣି ହେଲେ ମୋର ହୃଦୟ ଉଚ୍ଛୁଳି ଉଠୁଛି—

( ସମସ୍ତଙ୍କ ପୁନଃ ପ୍ରବେଶ )

ଗାୟତ୍ରୀ—(ପଲାୟନ) (ପାନ ଦେଇ) ପାନ ନଅନ୍ତୁ ଆଜ୍ଞା ।

ଶିବ—ଆଜକ ପିଲାଏ ପାନ ଖାଇବେ ନାହିଁ—"

ଗାୟତ୍ରୀ—ପିଲାଏ ପାନ ଖାଇବେ—"

ଶାନ୍ତ—ଆଜ ମୋ ଗାୟତ୍ରୀ ମାଙ୍କ ଇଚ୍ଛାରେ ସବୁ ହେବ । ବଂଶୀ ପାନ ନେଇଯା ।

ଶିବ—(ଗାୟତ୍ରୀ ହାତରୁ ପାନ ନେଇ) (କୃତ୍ରିମ ଅଭିମାନରେ) ତୋ ବୋହୂର କଥା ରହିବ ମୋ କଥା ରହିବ ନାହିଁ—? ତାହାହେଲେ ମୁଁ ଯାଉଛି । ଚାଲନ୍ତୁ ମାଷ୍ଟ୍ରେ । ଆମେ ଆମର ପାଠଶାଳା ସମ୍ବନ୍ଧରେ ଟିକଏ ଆଲୋଚନା କରିବା । ସପ୍ତମ ଶ୍ରେଣୀରେ ଉପନିଷଦକୁ ଅତିରିକ୍ତ ପାଠ୍ୟ କରି ରଖିବା କଥା ଭାବୁଛି ଯେ ଆପଣଙ୍କର ମତ କ'ଣ ।

ବସ୍ତୁ—ମା ଅନ୍ନପୂର୍ଣ୍ଣା ଯାହା ପରିବେଷଣ କରିଛନ୍ତି ଏଠି ଆଉ କ୍ଷଣେ ମଧ୍ୟ ଠିଆ ହେବାକୁ ଶକ୍ତି ନାହିଁ । ଚାଲି ସେ ଘରେ

ଟିକଏ ଗଡ଼ାଇ ପଡ଼ାଇ ହେଉ ହେଉ ଆଲୋଚନା କରିବା ଉଚିତ୍ । (ପ୍ରସ୍ଥାନ)

ବଂଶୀ—ଆମ୍ଭେମାନେ ଯାଉଛୁ ଜେଠାଇ ମା (ସମସ୍ତଙ୍କ ପଦସ୍ପର୍ଶ) ।

ଶାନ୍ତ—ବୁଢ଼ା ହେଇଥା ବାପ, ଆଉ ଥରେ ତୁମେ ସବୁ ଘର ଆଡ଼େ ଆସିବ ।

ବଂଶୀ—ଆଜ୍ଞା ଆମ ମୁଣ୍ଡରେ ପାଠର ଭାର ନଦ ଦେଉଛନ୍ତି । ଘରୁ ଘୁଞ୍ଚିବାକୁ ସମୟ ପାଉ ନାହୁଁ ।

ଶାନ୍ତ—ହଁରେ ବାପ ପଢ଼ । ଭଗବାନ୍ ତୁମକୁ ଶକ୍ତି ଦିଅନ୍ତୁ ।

( ବାଳକବୃନ୍ଦ ପ୍ରସ୍ଥାନ )

ଶାନ୍ତ—ମା ଗାୟତ୍ରୀ ! ଚାଲେ, ସକାଳୁ ଆଜ କିଛୁ ଖାଇ ନାହୁଁ । ତୋର ଭାତଟା ବାଢ଼ି ଦେଉଛି ଆସେ । (ପ୍ରସ୍ଥାନ)

ଗାୟତ୍ରୀ—ମୋ ମନ ଏଡ଼େ ଚଞ୍ଚଳ ହୋଇ ଯାଇଛି ଯେ ପାଦହଟା ଆଉ ତଳେ ପଡ଼ୁ ନାହିଁ । ଖାଇବା କଥାତ ଆଦୌ ମନେ ନଥିଲା । (ପ୍ରସ୍ଥାନ)

ଧୂର୍ଜଟି—(ପ୍ରବେଶ) ଖୁଡ଼ୀ ! ଖୁଡ଼ୀ ! କ'ଣ କରିବ ! ମନୁଷ୍ୟ ଭାସିଯାଉଛି । କୌଣସି ମତେ ତାକୁ ସଂସାର ସାଗର କୂଳରେ ଲଗାଇ ଦେବା ମୋର କର୍ତ୍ତବ୍ୟ । ତେଣେ ଶ୍ୱଶୁରଙ୍କର ମଧ ତାଡ଼ନା ଲାଗିରହିଛି । ମୋ ସ୍ତ୍ରୀ ଗୌରୀ ମଧ ମୋ ସାଙ୍ଗରେ ଲାଗିଛି । ଶିବ ଯଦ ଗୃହସ୍ଥ ବାହାସ୍ଥ କରି କଟକ ଆଡ଼େ ରହିଯାଆନ୍ତା, ଗୌରୀ ବଡ଼ ଖୁସୀ ହୁଅନ୍ତା । ଖୁଡ଼ୀ ! ଖୁଡ଼ୀ !

ଶାନ୍ତ—(ପ୍ରବେଶ) (ଆନନ୍ଦରେ) ଧୂର୍ଜଟି କଉ ! ଆସ ଆସ, କେତେ ଦିନ ହେଲା ଆସି ନଥିଲ । ବସ ବାପ ! ଭାବୁଥିଲି ଧୂର୍ଜଟି ମୋ ଉପରେ ରାଗ କରି ଅ.ସୁ ନାହାନ୍ତି ବୋଲି । ଅନେକ ଦିନ ପରେ ଆଜ ତୁମକୁ ଦେଖି ବଡ଼ ଆନନ୍ଦିତା ହେଲି ଧୂର୍ଜଟି ।

ଧୂର୍ଜଟି—ତୁମ ଉପରେ ରାଗ କରି ଯେ ଆସି ନଥିଲି ତାହା ନୁହେଁ । ସରକାରୀ ଚାକରୀ କଲେତ ନିଜ ଇଚ୍ଛାରେ ଚଳିବା କଥା ନାହିଁ । ଅ.ଜ ଏଇ ପାଖରେ ଗୋଟାଏ ସ୍କୁଲ ଦେଖିବା କଥା ଥିଲା । ଭାବିଲି, ଶିବ ତ ମୋ କଥା ଶୁଣିଲେ ନାହିଁ । ଖୁଡ଼ୀତ ମଧ୍ୟ ମୋ କଥା ଶୁଣୁ ନାହାନ୍ତି ।

ଶାନ୍ତ—ଖୁଡ଼ୀ ଯେ ତୁମ ପାଖରେ ଚିର ଋଣୀ ହୋଇ ରହିଛି ବାପ ! ଖୁଡ଼ୀ ତୁମ କଥା ଶୁଣିବ ନାହିଁ ! ତୁମେ ଗାୟତ୍ରୀ ମା'କୁ ମୋ କୋଳରେ ଦେଇଛ । ଏପରି ଦୁର୍ଲଭ ଧନ ତୁମେ ମୋତେ ଦେଇଛ ଧୂର୍ଜଟି—"

ଧୂର୍ଜଟି—ସେଇ କଥାହିଁ ଏକ୍ଷଣି ମୁଁ କହୁଥିଲି ଖୁଡ଼ୀ । ତେଣେ ଶ୍ୱଶୁର ମୋତେ ଉତ୍ୟକ୍ତ କରି ପକାଇ ଦେଉ ନାହାନ୍ତି । ଯେକୌଣସି ମତେ ତାକୁ ବୁଝାଇ କହି ଗୋଟାଏ ବଡ଼ ସ୍ଥାନରେ ବସାଇ ଦେଲେ । ତେଣିକି ସେ ସେହି ଭିତରେ ରହି ଦେଶ ସେବା କରୁ, କିଏ ଆପତ୍ତି କରୁଛି ? ତୁମକୁ କହିଲି ତୁମେତ ତାର ବ୍ରତର ପୂଜା ଆୟୋଜନରେ ଲାଗି ପଡ଼ିଛ । ଗଲା ବର୍ଷ ଏଇ ଦିନରେ ତିନି ତିନିଟା ବଡ଼ ସ୍ଥାନ ଭଲ ସ୍ଥାନ ଖାଲି ଥିଲା । ଦରଖାସ୍ତ ଲେଖି ଧରି ଆସିଲି, ଶୁଣିଲେ ନାହିଁ ।

ଶାନ୍ତ—ଶିବୁ ଏକ୍ଷଣି ଯାହା କରୁଛି ତାହା କମ୍ ମହତ୍ତ୍ୱ କାର୍ଯ୍ୟ ବୋଲି ମୋର ଧାରଣା ହେଉନାହିଁ ଧୂର୍ଜଟି—"

ଧୂର୍ଜଟି—(ସ୍ୱଗତ) ସ୍ତ୍ରୀ ଲୋକ ଟିକଏ ପଢ଼ାଶୁଣା କଲେ ମସ୍ତିଷ୍କ ଖରାପ ହୋଇଯାଏ । (ପ୍ରକାଶ୍ୟେ) ତୁମେ ଏସବୁ ଜଟିଳ ବିଷୟ ବୁଝି ପାରୁ ନାହିଁ ଖୁଡ଼ୀ ! ସଂସାର କରିବାକୁ ହେଲେ ଅନେକ ରକମର ଉପାଦାନ ଆବଶ୍ୟକ । ଏ ବିଷୟ ନେଇ ମୁଁ ଅହେତୁକ ଅନୁକମ୍ପା ଦେଖାଇବାକୁ ଆସୁଛି ବୋଲି ଭାବବ ନାହିଁ । ଶିବୁ ମୋର ଅତି ସ୍ନେହର ସାନ ଭାଇ ତାକୁ ମୁଁ ଟାଣି ଓଟାରି କଲେଜକୁ ନେଇ ଥିଲି—"

ଶାନ୍ତ—ହଁ ବାପ, ତୁମରି ଆନ୍ତରିକ ଦୟାରୁ ବିଭ୍ରାନ୍ତ ହୋଇ ଘରକୁ ଆସିଲି । ସେ ସ୍ନେହ ଋଣ ସେ କ'ଣ ଜୀବନରେ କେବେ ପରିଶୋଧ କରିପାରିବ । ମୁଁ କହୁଥିଲି କ'ଣ—"

ଧୂର୍ଜଟି—ଆଜ ଶୁଣା ଶୁଣି କରୁ ଚଳିବ ନାହିଁ ଖୁଡ଼ୀ । କକେ କେତେ ଆଶା ରଖିଥିଲେ । ଶେଷ କାଳରେ ମୋତେ କହି ଦେଇ ଯାଇଛନ୍ତି । "ବାପ ଧୂର୍ଜଟି ! ଶିବୁର ହୃଦୟ ଏତେ ସରଳ ଯେ ଜୀବନ ଯାତ୍ରା ପଥରେ ଠକ ହୋଇ ଯିବ ବୋଲି ଭୟ ହେଉଛି । ଯେତେ ଦୂର ପାରିବୁ ତା ଆଡ଼କୁ ଦୃଷ୍ଟି ରଖିଥିବୁ ।"

ଶାନ୍ତ—ଦୃଷ୍ଟି ତା ଆଡ଼କୁ ରଖି ରଖି ତ ତାକୁ ତୁମେହିଁ ବଡ଼ କରିଛ ଧୂର୍ଜଟି । ସବୁଠୁ ବଡ଼ ଦାନ ତୁମଠୁ ସେ ପାଇଛି, ତୁମେ ଗାୟତ୍ରୀ ମା'କୁ ଖୋଜି ଆଣି ଦେଇଛ ।

ଧୂର୍ଜଟି—ଅଭାବର ପୀଡ଼ାରେ ଅନେକ ଭୋଗିଛ ଖୁଡ଼ୀ ! ଏଣିକି ପୁଅର ଉପାର୍ଜିତ ଧନରେ ଶେଷ କାଳଟା ସୁଖରେ କଟାଇ—"

ଶାନ୍ତ—ସୁଖ ଦୁଃଖ ମନୁଷ୍ୟର ମନ ଉପରେ ନିର୍ଭର କରେ ଧୂର୍ଜଟି । ଅନେକ ସାଧନା କରି ପାଠଶାଳାଟି କରିଛୁ । ସେଥିରେହିଁ ତାର ଆନନ୍ଦ । ପିଲାଏ ଭଲ ପଢ଼ୁଛନ୍ତି, ତାକୁ ହାଙ୍ଗି ଭୁଙ୍ଗି—”

ଧୂର୍ଜଟି—ହାଙ୍ଗି ଦେଇ ଯିବାକୁ ତ ମୁଁ କହୁନାହିଁ । ସ୍କୁଲ ତାର ଥାଉ, ଅନ୍ୟ ଶିକ୍ଷକମାନେ ପିଲାଙ୍କୁ ପଢ଼ାନ୍ତୁ । ଏକଷଣି ଗୃନ୍ଦାକରି ସ୍କୁଲ ଚଳାଉଛୁ । ସେତେବେଳେ ନିଜର ଉପାର୍ଜିତ ଅର୍ଥରେ କ’ଣ ନ କରି ପାରିବ ! ମୋର ଭୟ ହେଉଛି କ’ଣ କି ଖୁଡ଼ୀ । ଦେଶରେ ଯେପରି ଗୋଟାଏ ଆନ୍ଦୋଳନ ଆରମ୍ଭ ହେଲାଣି—”

ଶାନ୍ତ—ସେ କଥା ଶିବୁ ମୋତେ କହୁଥିଲା ଧୂର୍ଜଟି—”

ଧୂର୍ଜଟି—କେବଳ କହିବା କଥାତ ନୁହେଁ । ଶିବୁ ସେଥିରେ ପ୍ରତ୍ୟକ୍ଷ ଭାବରେ ଯୋଗ ଦେଲାଣି ବୋଲି ମୋର ଭୟ ହେଉଛି । ଏଇତ ସେଦିନ କାଗଜରେ ଦେଖିଲି ଏତେବଡ଼ ଲମ୍ବା ବିବୃତ୍ତି ଦେଇଛନ୍ତି ଯାହାକି ସରକାରଙ୍କ ବିରୁଦ୍ଧରେ ଯାଉଛି । ସେ ଲେଖା ପଢ଼ି ଶ୍ୱଶୁର ବିଚଳିତ ହୋଇ ଯାଇଛନ୍ତି ।

ଶାନ୍ତ— ସେ ଯେଉଁ ଲେଖା ଲେଖିଛି ମୁଁ ପଢ଼ିଥିଲି । ଦେଶର ଅଭାବ କଥା ଲେଖିଛି । ରାଜା ଯଦି ପ୍ରଜାଙ୍କର ଦୁଃଖ ଦାରିଦ୍ର୍ୟ କଥା ନ ବୁଝିବେ—”

ଧୂର୍ଜଟି—ଏ ସବୁ ଦୁଃସାହସ ଖୁଡ଼ି ! ସମ୍ପୂର୍ଣ୍ଣ ରୂପେ ଦୁଃସାହସ । ଯେଉଁ ସରକାରଙ୍କ ନାଁ ଶୁଣିଲେ ପୃଥିବୀ କମ୍ପୁଛି । ଏଁ କଣ କହୁଛ ଖୁଡ଼ି ! ତାକୁ କହ । ସେ ସ୍କୁଲକଥାରେ ରହିଯାଉ ।

ଶାନ୍ତ— ମହାତ୍ମାଗାନ୍ଧୀ ଯେଉଁ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଛନ୍ତି ତା' କଣ ଉପଯୁକ୍ତ ହେବନାହିଁ ଧୂର୍ଜଟି ?

ଧୂର୍ଜଟି—ଏଇ କଥାଟି ଭାବିଲେହିଁ ମୋର ହୃତ୍କମ୍ପ ହେଉଛି ଖୁଡ଼ୀ । ବନ୍ୟାବାପଡ଼ି ବୋଲି ଗାଁ ଗାଁ ବୁଲି ସେବା କାର୍ଯ୍ୟରେ ଲାଗିଛି—"

ଶାନ୍ତ— ତା'ର ଯେ ଅସୀମ ଧୈର୍ଯ୍ୟ, ସହିଷ୍ଣୁତା ଦେଖି ବିସ୍ମିତା ନ ହୋଇ ରହିପାରୁ ନାହିଁ । ତୁମେ ତ ଜାଣିଛ, ତୁମ କକେଇ ଦୁଃଖୀର ଦୁଃଖ ଦେଖିଲେ ଘରେ ଯାହାଥିବ ଦେଇ ଦେଉ ଥାନ୍ତି । ତାଙ୍କର ପୁଅତ ସେ । ଶିବୁର ତ ସମ୍ପତ୍ତି ବୋଲି କିଛି ନାହିଁ, ସେ ତା'ର ଦେହ ମନଦେଇ ଦେଶର ସେବା କରିବାକୁ ବାହାରିଛି ।

ଧୂର୍ଜଟି—ଦେଶର ସେବା କରିବ ନା, ସରକାର ତାକୁ ଜେଲରେ ପୂରେଇ ଦେବେ ।

ଶାନ୍ତ— ସତ୍କାର୍ଯ୍ୟ କରି ଯଦି ଜେଲକୁ ଯିବାକୁ ପଡ଼େ—"

ଧୂର୍ଜଟି—ଏସବୁ ବଡ଼ ବଡ଼ ତତ୍ତ୍ୱ କଥାର ଆଲୋଚନା କରିବାକୁ ମୋର ସମୟ ନାହିଁ ଖୁଡ଼ି ! ତୁମକୁ ମୁଁ କହୁଛି । ବୋହୂ ଆଣିଲ । ଏଇ କାଲି ବୋଲି ପୁଅ ଝିଅ ଜନ୍ମ ହେବେ । ଦେଶ ସେବା କରି ଜେଲକୁ ଗଲେ ଆପଣା ସଂସାର କଥା ଦେଖିବ କିଏ ? ଘର ସଂସାର କରିବ । ଟଙ୍କା ପଇସା ହେବ । ଆଜି ଟିକିଏ ଧନୀ ମାନୀ ହୋଇ ଗାଁର ପାଞ୍ଚ ଜଣଙ୍କ ସହିତ ମୁଣ୍ଡ ଉଁଚ୍ଚ କରି ଠିଆ ହେବ । ଏଇତ ଆମର ଲକ୍ଷ୍ୟ । କଣ କହୁଛ ଖୁଡ଼ୀ—"

ଶାନ୍ତ— ଶିବୁ ଯେ ଅନ୍ୟ ପ୍ରକାର ଭାବୁଛି ଧୂର୍ଜଟି । ମୁଁ ଆଉ କ'ଣ କରିବି ?

ଧୂର୍ଜଟି— କଣ କରିବ, ତାକୁ ବୁଝାଇ କହିବ । ତୁମର ତ ପୁଣି ଗୋଟାଏ ଦାୟିତ୍ୱ ରହିଛି । ସେ ଯେଉଁ ଦୁର୍ଗମ ପଥରେ ଗତି କରିବାକୁ ଅଗ୍ରସର ହେଲଣି, ଭାବିଲେ ମୋର ମସ୍ତକ ଘୂର୍ଣ୍ଣାୟମାନ ହୋଇ ଯାଉଛି । ବୋହୂଟିଏ ବଡ଼ ଘରୁ ଆଣିଲ —"

ଶାନ୍ତ — ହଁ ବାପ, ତୁମେ ଠିକ୍ କଥା କହୁଛ । ବଡ଼ ହେଲା । ବିଦ୍ୟା ପଢ଼ିଲା । କେତେ ଜ୍ଞାନର କଥା କହୁଛି । ବଡ଼ ଘରକଣ୍ଟିଏ କରନ୍ତା । ଶ୍ୱଶୁର ଖୁସି ହୁଅନ୍ତେ ।

ଧୂର୍ଜଟି—ସେଇ କଥାତ କହୁଛି ଖୁଡ଼ି ! ବିବାହ କରି ଗୃହଧର୍ମ ପାଳନ କରିବା ତାର କର୍ତ୍ତବ୍ୟ । ଏ ସମ୍ବନ୍ଧରେ ତୁମର ମଧ୍ୟ ଚିନ୍ତା କରିବା କଥା ।

ଶାନ୍ତ — ତୁମେତ ଅ.ସିଛ । ତାକୁ ଟିକିଏ ବୁଝାଇ କହିଥାନ୍ତ —"

ଧୂର୍ଜଟି—ମୁଁ କଣ ବୁଝାଇ ନାହିଁକି ଖୁଡ଼ି ! କଥା ଆରମ୍ଭ କଲେ ପୁରୀଠୁ ପିପିଲି ପର୍ଯ୍ୟନ୍ତ ନଦୀ ବଢ଼ିରେ କେତେ ମଲେ, କେତେ ଗୃହଶୂନ୍ୟ ହେଲେ, କେତେ କ କ ରୋଗରେ କଷ୍ଟ ପାଉଛନ୍ତି, ସେଇ ପୁରାଣ ପଢ଼ିବ ଯେ ସେତେବେଳେ ମୋର ଅବସ୍ଥା ମଧ୍ୟ ଶୋଚନୀୟ ହୋଇଯିବ ।

ଶାନ୍ତ—ତାହା ହେଲେ ମୁଁ ତାକୁ ନିବର୍ତ୍ତାଇବାକୁ ଚେଷ୍ଟା କରିବ—"

ଧୂର୍ଜଟି— ଏତେ ସମୟ ପରେ ତୁମେ ମୋ ମନର ଭାବଟାକୁ ବୁଝିଲ । ଦେଶର କାର୍ଯ୍ୟ କରିବା ସହଜ ନୁହେଁ । ଗରିବ ବୋଲି ଯେଉଁ ମାନଙ୍କୁ ଆମେ ଦୟା ଦେଖାଇବାକୁ ଯିବା ସେହି ମାନେହିଁ ଆମମାନଙ୍କୁ ଭକ୍ତିହୀନ ଦୃଷ୍ଟିରେ ଦେଖିବେ । ଦେଶରେ ସେ ଗୋଟାଏ ଯନ୍ତ୍ର ଚାଲିଛି । ଚାଲିଥାଉ, ଆମର

ସେଥିରେ ହାତଦେବା ଦରକାର କଣ ? ଏଁ କ'ଣ କହୁଛ ଖୁଡ଼ ?

ଶାନ୍ତ—ହଁ ବାପ ! ମୁଁ ସେଇ ଚେଷ୍ଟା କରିବି ।

ଧୂର୍ଜଟି—ମୁଁ ଯାଉଛି ଖୁଡ଼ । ରାସ୍ତାରେ ଗାଡ଼ି ଅପେକ୍ଷା କରିଥିବ । ଆଉ ଜଣେ ବନ୍ଧୁ ଅପେକ୍ଷା କରିଛନ୍ତି । ଗଲମାସରେ ନୂଆଁ ମଠର ଖଣ୍ଡିଏ କଣିଲି । ମଠର କଣିବାକୁ କେତେ ଦିନ ଲାଗନ୍ତା ଖୁଡ଼ି ! ଶିବୁ ଯଦି ପଢ଼ା ଶେଷ କରିବାଠୁଁ କାର୍ଯ୍ୟରେ ନିଯୁକ୍ତ ହୋଇ ଯାଇଥାନ୍ତା କେତେ କଣ କରି ପାରନ୍ତାଣି । ଏ ସମୟକୁ ଖୁଡ଼ୀ ତୁମେ ପୁରୀରେ ଥାନ୍ତ । ପୁଅର ମଠର ଗାଡ଼ିରେ ବସି ଦୁଇବେଳା ଜଗନ୍ନାଥ ଦର୍ଶନ କରି ଆସୁଥାନ୍ତ । ଯେ ସେଇ କଥା କହୁଥିଲି । ପ୍ରଥମରୁ ଶ୍ୱଶୁର ଭୟ କରୁଥିଲେ । କଲେଜରେ ପଢ଼ି ପଢ଼ି ଏଣ୍ଟପରି ଲେଖୁଥାଏ ଯେ ଅଧ୍ୟାପକମାନେ ହତଭମ୍ବ ହୋଇ ଯାଉଥାନ୍ତି—

ଶାନ୍ତ—(ଭାବ ବେଗରେ) ହଁ ବାପ, ଭଗବାନ୍ ତାକୁ ସେ ଶକ୍ତିଟିକ ଦେଇଛନ୍ତି ।

ଧୂର୍ଜଟି—ତୁମେ ପ୍ରଥମେ ଗୋଟିଏ କାମ କରିଦେବ ଖୁଡ଼ି ! ଦରଖାସ୍ତ ଖଣ୍ଡିକ ଲେଖି (କାଗଜ ଦେଇ) ଏଇ ଠିକଣାରେ ପଠାଇ ଦେବ । ସେଥିର ଫାରମଟା ମଧ୍ୟ ଆଣି ଦେଇଛି—"

ଶାନ୍ତ—(କାଗଜ ନେଇ) ଲେଖି ପଠାଇ ଦେବାକୁ' କହିବ ଧୂର୍ଜଟି—"

ଧୂର୍ଜଟି—ଏତେ ଦିନ ପରେ ଆଶାର ଗୋଟାଏ କ୍ଷୀଣ ରେଖା ଦେଖାଦେଲା । ଆଉ କିଛି ଚିନ୍ତା କରିବାକୁ ପଡ଼ିବ ନାହିଁ । ଶ୍ୱଶୁର ଆଉ ଯାହା କରିବା କଥା କରିଦେବେ—"

ଶାନ୍ତ—(ଉଦାସ ଦୃଷ୍ଟିରେ ଚାହିଁ) ହଁ ବାପ, ଶ୍ୱଶୁର ସବୁ କରିଦେବେ ।

ଧୂର୍ଜଟି—ଖୁଡ଼ି ! ତୁମେ ଇଚ୍ଛାକଲେ ସବୁ ହୋଇଯିବ । ଏଇ କଥାଟି ମନେ ରଖିଥାଅ । ଯାଉଛି ଖୁଡ଼ି । ଶ୍ୱଶୁର ପୁରୀରେ ଅଛନ୍ତି । ସୌରୀ ଯାଉଛି, ଶ୍ୱଶୁରଙ୍କୁ ସମ୍ବାଦ ଦେଇଦେବି । ବଡ଼ ଖୁସି ହୋଇଯିବେ, ବୁଝିଲ (ପ୍ରସ୍ଥାନ ଉଦ୍ୟମ) ।

ଶାନ୍ତ—ଦେଖିଲ ଧୂର୍ଜଟି, ଏତେବେଳ ଯାଏ ପଚାରି ପାରିନାହିଁ । ତୁମ ପୁଅ ଝିଅ ଭଲ ଅଛନ୍ତି—"

ଧୂର୍ଜଟି—(ହସି) ଖୁଡ଼ି ମୋ ନିଜ ପୁଅର ଚିନ୍ତାରେ ବଞ୍ଚେଇ—"

ଶାନ୍ତ—(ଉଦାସ ଭାବରେ ହସି) ହଁ ବାପ, ପିଲାଙ୍କ କଥା ଭାବ ଭାବ ମୁଁ ଅନେକ ସମୟରେ ସଂସାର କଥା ଭୁଲିଯାଏ । ଆଜି ତାର ଜନ୍ମଦିନ ଗାୟତ୍ରୀ ବଡ଼ା, ଚକୁଳି, ଖିରି କରିଛି । ତୁମେ ଟିକିଏ ଖାଇବ ନାହିଁ ଧୂର୍ଜଟି । ଆସ ଯିବା ଆସ । ଗାୟତ୍ରୀ ! ଗାୟତ୍ରୀ ମା, ଉଭୟେ ପ୍ରସ୍ଥାନ (ପଟ୍ଟ ପତନ)

---

# ପ୍ରଥମ ଅଙ୍କ

## ଦ୍ୱିତୀୟ ଦୃଶ୍ୟ

ସ୍ଥାନ—ବିଶ୍ୱମ୍ଭର ମହାପାତ୍ରଙ୍କ ସରକାରୀ ବାସଭବନ ।

(ବାରଣ୍ଡାରେ ଚନ୍ଦ୍ରପାଣି ଓ ସଦାନନ୍ଦ)

ଚନ୍ଦ୍ର— ଭାଗ୍ୟବଳରେ ଏପରି ସମ୍ପଦ ମିଳେରେ ସଦେଇ । ପୁରାଣରେ ଆମେ ପଢ଼ିଥିଲେ ନନ୍ଦନ କାନନ, ଆଜି ସ୍ୱର୍ଗ କଥା । ଏଇତ ଏଠି ଦେଖୁଛୁ ପାଇତ ସ୍ୱର୍ଗପୁରୀ ପରି ଦିଶୁଛି ।

ଏଇ ଯେ ଫୁଲ ବଗିଚୁ ଫୁଲରେ ଭରି ହୋଇ କି ଶୋଭା-ବନ ଦିଶୁଛି । (ସଦାନନ୍ଦ କଟି ପାଖରୁ ପାନଡ଼ବା ଖୋଲିବା) ପାନ ଖଣ୍ଡେ ଦେ ମ ସଦେଇ । ମୋର ପାନଟା ସରି-ଗଲା ଯେ—"

ସଦା— (ଘୁଞ୍ଚିଯାଇ) ହଁ ହେ କବି ତୁମେ କେଉଁଦିନ ପାନ ରଖୁଛ ଯେ ମିଛଟାରେ ସରିଗଲା ବୋଲି କହୁଛ ।

ଚକ୍ର— (ନିଶ୍ଚିନ୍ତ ଭାବରେ ସଦାନନ୍ଦ ପାଖକୁ ଘୁଞ୍ଚିପାଇ) ତୋ ହାତର ତିଆରି ପାନଟା ବଡ଼ ସୁନ୍ଦର ହୁଚ ଲାଗୁଛି ମ । (ପାନଡ଼ବା ନେଇ)

ସଦା— ପାଖକୁ ଆସିଲେ ପାନଡ଼ବାକୁ ହାତ ବଢ଼ାଇ ଦେବ । ହଇହେ । ଗାଁରୁ ପୁଣି ପର୍ଯ୍ୟନ୍ତ ଆସିଲ ହାତରେ ପାନ ଦିଖଣ୍ଡ ଆଣିନ । ପାନତ ବନୁ ବୋଉ ତିଆରି କରେ । ଏଇ ଯୋ ନ'ଦିନଆ ଝିଅ ମେଘ ହେଲା । ମାସେ ହେଲା ସେଇ ଝିଅଠୁ ସେ ତା ପିଲାଙ୍କ ସହିତ ଜରରେ ଶୋଇଛି—"

ଚକ୍ର— (ପାନ ଚୋବାଇ ଚୋବାଇ) ହଁ ରେ ସଦେଇ । ମୋର ମଧ୍ୟ ସେଇ ଦଶା । ଝିଅ ମେଘଟା ଶଣ୍ଢ ହେଲାରେ ସଦେଇ । ସେଇ ମାସେ ହେଲା ଶ୍ଲେଷ୍ମାଟା ଧରିଛି ଯେ ଆଉ ଛାଡ଼ିବାକୁ ନାହିଁ । (ସଦେଇଙ୍କ କଟିରୁ ନସ୍ୟ ନେଉ ନେଉ) ତୋର ସେ କସ୍ତୁରୀ ନସ୍ୟରୁ ଟିପେ ନେବା (ନସ୍ୟ ନେଇ ନସ୍ୟ ଗ୍ରହଣ)

ସଦା— ହଁ ହେ । ନାସ ଟିକିଏ କି ପାନ ଖଣ୍ଡେ ପାଖରେ ରଖିବ ନାହିଁ—"

ଚକ୍ର— (ଆଉ ଖଣ୍ଡେ ପାନ ନେଇ) ଶୁଣୁଛ ସଦେଇ । ଆମର ଏଇ ଯୋ ମକଦ୍ଦମାଟା ଲାଗିଛି । (ସ୍ମରଣ କରି) କଣ କହିବ ବୋଲି ଭାବୁଥିଲି—

ସଦା— ହଁ ହେ । ତୁମର ଘଡ଼ି ଘଡ଼ିକେ ବସ୍ତୁତଣ ଆସି ଯାଉଛି । କଣ କହୁଛ କହୁନ । ମୋତେ କାହିଁକି ଟାଣି ଆଣିଛ କହିଲ । ମକଦ୍ଦମାରେ ସାକ୍ଷୀଦେବ ତୁମେ ।

ଚନ୍ଦ— ହଁରେ ହଁ । ମନେ ପଡିଗଲା । ଶୁଣୁ (ପାଖକୁ ଲାଗିଯାଇ) ତୋର ମୋର କଥାମ । ଶିବୁର ଶ୍ୱଶୁରଙ୍କ ପାଖକୁ ଯିବ, କହିଦେବ ଯେ ସବୁ ହୋଇ ଯିବ ବୋଲି ଦାଶରଥି ସାହୁକୁ ବୁଝାଇ ଦେଇଛି । ବଡ଼ ଖୁସି ହୋଇ ପଚିଶଟା ଟଙ୍କା ଦେଇ ଦେଲା । ବଶ୍ୱମ୍ଭରମହାପାତ୍ରକୁ ଦେଖିଲେ ମୋ ଦେହ କମ୍ପୁଛି । ମୁଁ କଥାହେବ—

ସଦା— ତୁମର ମିଛ କହିବା ସ୍ୱଭାବଟି ମୁଁ ଭଲ ଭାବରେ ଜାଣିଛି ବଳେ । ଦେଖିଲ, କଥାହେଲ, ମକଦ୍ଦମାଟା ଜିତାଇ ଦେବେ ବୋଲି କହିଲେ । ହାତଧରି ନେଇ ଚଉକରେ ବସାଇଲେ ବୋଲି କହିଦେବ । ମିଥ୍ୟା ସାକ୍ଷୀ ଦେବ, ମିଥ୍ୟା କହିବ ଏଇତ ତୁମର ମହତ୍ କାର୍ଯ୍ୟ—

ଚନ୍ଦ— (ନସ୍ୟ ନେଇ) କଣ କରିବରେ ସଦେଇ, ସବୁ ଭାଗ୍ୟର ଦୋଷ । ପରିବାର ବଢ଼ି ଚାଲିଛନ୍ତି । ବର୍ଷକୁ ଗୋଟିଏ ନୂଆଁ କୁଣିଆଁ ଘରକୁ ଆସୁଛନ୍ତି—କୌଣସି ମତେ ସେମାନଙ୍କୁ ଚଳାଇବାକୁତ ହେବ—

ସଦା— ଗଞ୍ଜେଇ ଚିଲମ ଟାଣି ସରୁ ଚକୁଳି ଦୁଧସର ଖାଇ ଭୂମି ଖଣ୍ଡିକ ବନ୍ଧା କରି ଦେଲ । ଯଜମାନ କାର୍ଯ୍ୟଟିକ କରିବାକୁ ତୁମ ଦେହଟା ଭାଙ୍ଗି ଯାଉଛି । ମିଛରେ ଘାଣ୍ଟି ହେଉଛ—

ଚନ୍ଦ— (ନସ୍ୟ ନେଇ) ତୋ ନନା ଭଲ ଜମିଖଣ୍ଡେ ରଖି ଦେଇଥିଲା । ବଡ ଘରୁ ବୋହୂଟିଏ ଆଣି ଦେଇଥିଲା ।

ଭାଗ୍ୟ ତୋର ଭଲ— ମୋ ବୋଉ ମୋ ବେକରେ ବନ୍ଧ ଦେଇଛି ବାଲି ଘଡ଼ା। ତାର ଗୋଟାଏ ଭାଇ ଆସି ରହୁଛି ମୋ ଘରେ, ମୋର ଏ ଦୁଃଖ କଥା କିଏ ବୁଝିବ। ଭାଗ୍ୟ ତୋର ଭଲ—

ସଦା— ମୋର ଭାଗ୍ୟ ଭଲ। ଆମ ଗୁହାଳର ଗାଈଟାର ଭାଗ୍ୟ ଯେପରି ଭଲ। ମନୁଷ୍ୟ ହୋଇ ଜନ୍ମ ହେଲେ ଆମର ପ୍ରଧାନ ଆଉ ପ୍ରଥମ ଚିନ୍ତା ହେଲା କପରି ବେଶିକରି ଭଲ ପଦାର୍ଥ ଖାଇବା। ପୁଣି ସେ ଖାଦ୍ୟକୁ ହଜମ କରିବା ନିମନ୍ତେ ହଜମି ବଟି ଖୋଜିବା। ପିଲା କେତୋଟାକୁ ଜନ୍ମ ଦେଇ ଯମ ଦୂତର ଆଗମନ ଅପେକ୍ଷାରେ ରହିବା। ଶ୍ମଶାନକୁ ଯିବା, ଜଳି ପୋଡ଼ି ପାଉଁଶ ହୋଇଯିବା। ଦେଖୁଛ କକେଇ, ଏଇ ଯେ ସୌନ୍ଦର୍ଯ୍ୟମୟ ପୃଥିବୀ ଯାକୁ ଦେଖିବାକୁ ଆମର ଇଚ୍ଛା ନାହିଁ କି ଅବସର ନାହିଁ--

ଚନ୍ଦ— (ପାନ ନେବା ଉଦ୍ୟମରେ ରହି) କଣ ପରି କେତେ କଥା କହି ଯାଉଛୁ ମ! ଜ୍ଞାନ ଗୌରବର କଥା କହିବା ଆରମ୍ଭ କଲୁଣି। ଶିବୁ ମିଶ୍ରର ଦେହ ଛୁଆଁ ପବନ ଦେହରେ ଲାଗିଲା କି?

ସଦା— (ଔଦାସ୍ୟରେ) ରହିଥାଉ, ଆଉ ଖଣ୍ଡେ ପାନ ଅଛି ଯେ—

ଚନ୍ଦ— ଆରେ, ଏକା ବୟସର ହୋଇଛେ ବୋଲି କକେଇଟାକୁ ମାନ୍ୟ କରି କଥା କହିବୁ ନାହିଁ। (ପାନ ନେଇ ଖାଇ) (ପାଖକୁ ଲାଗି) ଏ ସଦେଇ ଶୁଣୁଛ।

ସଦା— କଣ କହିବ କହୁନ, କାହିଁକି ପାଖକୁ ପାଖକୁ ଆସୁଛ, ପାନଛେପ ଗୁଡ଼ାକ ଉପରେ ପଡୁଛି। (ଘୁଞ୍ଚିଯିବା)

ଚନ୍ଦ— (ପାଖକୁ ଲାଗିଯାଇ) ଶୁଣୁନ ତୋର ମୋର କଥାନ । ହଇରେ, ଏତେ ବଡ଼ ଲୋକ ହୋଇଛନ୍ତି ଶ୍ୱଶୁର ! ଏ ଆମ ଗାଁର ଶିବୁ କଥା କହୁଥିଲା—

ସଦା— ହଁ ହେ, ମୁଁ ବୁଝି ଗଲିଣି । କେଉଁଠି ମକଦ୍ଦମାରେ ଏ ପଶିଛନ୍ତି ମୋ କାନ ଧରି ଟାଣି ଆଣିଛନ୍ତି । ମୋର ଏପରି ଉତ୍କୃଷ୍ଟ ବୁଦ୍ଧିଟା ଯେ ସ୍ୱାଙ୍କ ସାଥିରେ କାହିଁକି ଆସିଲା କେଜାଣି । (ଘୁଞ୍ଚି) ଛେପ ପଡ଼ୁଛି କକେ—

ଚନ୍ଦ— ହଇରେ ସଦେଇ । ପାଠ ଗୁଠ ପଢ଼ିଲୁ । ଶ୍ୱଶୁର ତ ଯାହା କହିଲେ ତାହା କରି ଦେଇ ପାରନ୍ତା । କେତେ ବଡ଼ ଲୋକ ହୋଇ ଥାନ୍ତା, ତାହା ନକରି ପାଠଶାଳାଟେ କରି ବସିଛି—"

ସଦା— (ଔଦାସ୍ୟ ବିରକ୍ତିରେ) ସେତ ତାର ପାଠଶାଳା କରିଛି, ତୁମର ସେଥିରେ କ୍ଷତିଟା କ'ଣ ହୋଇ ଯାଉଛି !

ଚନ୍ଦ—(ପାନ ଚୋବାଇ ଚୋବାଇ) ବୁଝିଲୁ ନାଆଁ ଧୂଆଁ । ଶୁଣହେ ପଚାରୁଛି ତୁମର ସେଥିରେ କ୍ଷତିଟା କ'ଣ ହେଉଛି ? କ୍ଷତି ହେଉ ନାହିଁ, ନିଶ୍ଚୟ କ୍ଷତି ହେଉଛି । ପନ୍ଦର ଷୋଳ ବର୍ଷର ପୁଅଟା ହେଲାଣି, ଯଜମାନ ଘରି ଘରକୁ ଯାଇ ଡାଲି, ଚାଉଳ, ଘିଅ, ଗୁଡ଼, ପିଢ଼ା ଗାମୁଛା କେତେ କ'ଣ ଆଣି ରଖୁଥାନ୍ତା, କାଲି ମୋତେ କହୁଛି-ଆମର ସେ ଧଡ଼ିଆଟାନ କହୁଛି, ନନା ଉପନିଷଦ ପଢ଼ିବ । ସ୍ୱା'ବାପତ ବଡ଼ ବଡ଼ ଉପନିଷଦ ପଢ଼ିଥିଲା, ପୁଅ ବାହାରିଲା ପଢ଼ିବ ଉପନିଷଦ । ଶ୍ରାଦ୍ଧ ଶାନ୍ତିଟେ କରିବାକୁ ପଠାଇଲେ କହୁଛି, ଗୁରୁଙ୍କ ଆଦେଶ ନ ହେଲେ ଯିବି ନାହିଁ ।

ସଦା—ତୁମର ଏ ଦେହ ଗଣ୍ଡି ଝାଡ ଅଛୁ, ତୁମେ ଯାଉ ନାହିଁ । ଶୁଣନ୍ତେ ଏହାଙ୍କ କଥା ! ସେ ଆଖଡ଼ା ଘରେ ବସି ପାନ ଗୁଡ଼ାଏ ଗୁଡ଼ାଇ ତାସ ପିଟୁଥିବେ । ତାପରେ ତୁମର ଆଜ ଗୋଟାଏ ମହତ୍ ଗୁଣ ଅଛି, କଳେ, ଯାକଥା ତାପାଖରେ ତା କଥା ଯାପାଖରେ କହ୍ବି ନିନ୍ଦା ବଚନ ଗୁଡ଼ାଏ ସୃଷ୍ଟି କରି ବୁଦ୍ଧି ର ପ୍ରଖରତା ଦେଖାଇ ହେବ ।

ଚନ୍ଦ—କଣ କହିଲ୍, ପର ନିନ୍ଦା କରୁଛି ବୋଲି କହୁଛ, ଆଉ ସେ ଚୋର ଶିବୁ ମିଶ୍ର— ହଇରେ ଏ ସଦେଇ । ପାଠଶାଳା କରନ୍ତି ବୋଲ ଫୁଲ ,ଫାଟି ଯାଉଛୁ । କାହିଁକ ସେ ସେ ନୋକଟା ଉପରେ ତୋର ଏତେ ଭକ୍ତି ହୋଇଛି ମୁଁ ଭାବି ପାରୁ ନାହିଁ । ଆରେ ସଦେଇ, ସେ କଥା ଭାବିଲେ ଦେହରେ ଶୀତ କଣ୍ଟା ବାଜି ଯାଉଛି । ଯେଉଁଠି ଆମ ପିଲାଏ ବସି ପାଠ ପଢ଼ିବେ, ସେଠି ଆସି ବସିବେ ହାଡ଼ି, ଦଣ୍ଡାସି, ପାଣ, କନ୍ଧ, (ଶିହରି ଉଠିବା ଭଙ୍ଗି କରି) ଗଲା, ଗଲା, ଆମର ଜଇତାର ମର୍ଯ୍ୟାଦା ବ୍ରାହ୍ମଣ ପଣିଆଁ ସବୁ—

ସଦା—(ପାନ ଡବା ଖୋଲି ଦେଖି) (ହତାଶ ଦୃଷ୍ଟିରେ ଚାହିଁ) ବୁରିଖଣ୍ଡ ପାନ ଥିଲା ଖାଇ ଦେଲ କଳେ ?

ଚନ୍ଦ—ହୁଁମ ପାନ କ'ଣ ଖାଇବୁ, କଥା ଆସି ତୋଟି ଚିପି ଧରିଲାଣି, ପ୍ରାଣଟା ଯିବାକୁ ବାକି ଅଛି । ଆମେ ହାଡ଼ି ହୋଇଯିବା—

ସଦା—(ନିର୍ଲିପ୍ତ ଭାବରେ) ଯେଉଁ ପୁଣ୍ୟବାନ୍ ବ୍ରାହ୍ମଣ ହୋଇଛନ୍ତି— (ବାହ୍ୟରେ ହର୍ଷ ଶବ୍ଦ)

ଚନ୍ଦ— (ଚାହିଁ) କାହାର କେଜାଣି ମୋଟର ଗାଡ଼ି ଗୋଟେ ଆସିଲାଣିରେ ସଦେଇ—

ସଦା— (ସମ୍ପୂର୍ଣ୍ଣ ଉଦାସୀନ ଭାବରେ) ହଁ, କଏ ଆସିଲେ ମୋର କ'ଣ ଯାଏ ସେଥିରେ, ତୁମେ ଡାକ ଆଣିନ୍ତୁ ବୋଲି ଆସିଛୁ । ମୋର କ'ଣ କାହାକୁ କହିବାକୁ ଅଛି ନା ପଚାରିବାକୁ ଅଛି । ପାନ ଥିଲେ ଖଣ୍ଡେ ଖାଇ ଥାନ୍ତେ —

ଧୂର୍ଜଟି—(ପ୍ରବେଶ) (କୌଣସି ଦିଗକୁ ନ ଚାହିଁ ବିପରୀତ ଦିଗକୁ ପ୍ରସ୍ଥାନ ଉଦ୍ୟମ)

ଚନ୍ଦ— (ଉତ୍ସାହରେ) ଏ ସଦେଇ । ଦେଖେ ଦେଖେ । ଆମର ଧୂର୍ଜଟି ।

ସଦା— (ନଶୁଣି) ଦେଖିବ ଚୋଜାଗୁଡ଼ । ଖଣ୍ଡେ ହେଲେ ପାନ ରଖିଲ ନାହିଁ ।

ଚନ୍ଦ— ସଦେଇ ଏ ସଦେଇ ! ଉତ୍ତମ ତୋର କଥାଟି ଭଲ ହେଉଛି । ଦି'ପଦ କହି ଦେବୁ । ଧୂର୍ଜଟି ଆମ ଗାଁର ଧୂର୍ଜଟି ମ, ଆମ ଆ, ତୁଟିକଏ କହିଦେଲେ, ସେ ତାର ଶ୍ୱଶୁରଙ୍କୁ ଟିକଏ କହିଦେବ—"

ସଦା — କ'ଣ କହୁଛ । ତୁମକୁ ଦିଶୁନାହିଁ କି ? ଭିତରକୁ ଚାଲିଗଲାଣି, ତୁମେ ଏଠି ବସି ଧୂର୍ଜଟି ଧୂର୍ଜଟି କରୁଛ ଯେ, ମୁଁ ସେ ଭିତରକୁ ଯାଇ ପାରିବି ନାହିଁ ।

(ବିଶ୍ୱମ୍ଭର ଧୂର୍ଜଟି ପ୍ରବେଶ) (ଚନ୍ଦ ଏପାଖ ସେପାଖ ହେବା)

ଧୂର୍ଜଟି— ଯେ କୌଣସି ମତେ ଆଜହିଁ ଶୁଭ ସମ୍ବାଦଟି ନ ଦେଇ ଆଉ ରହି ପାରିଲି ନାହିଁ ।

ବିଶ୍ୱ— ଦରଖାସ୍ତଟା ପଠାଇ ଦେଇଛତ ଜଟି ? ପ୍ରକୃତରେ ମୁଁ ବଡ଼ ଉତ୍କଣ୍ଠିତ ହୋଇ ରହିଥିଲି ।

ଧୂର୍ଜଟି—ହଁ ଅଜ୍ଜା, ମୋତେ ଆପଣ ଯେଉଁ ଦୋଷଟି ଦେଉଥିଲେ ମୋ ଯୋଗରୁ—

ଚନ୍ଦ— (ଆଖି ଠାର ନା ନା ଇଙ୍ଗିତ ସଙ୍କେତ କରି ଧୂର୍ଜଟିଙ୍କୁ ଡାକବା)

ଧୂର୍ଜଟି—ଯାଉଛୁ ଅଜ୍ଜା, ଆପଣଙ୍କ ଅଭିଳାଷିତ ପୂରଣ ହୋଇଗଲା, ସଦା ଯିନା ଦେଉଥିଲେ, ଶିବୁ ପରି ଜ୍ୱାଇଁ ଆପଣ ଏ ଦେଶରେ ଖୋଜି ପାଇ ନଥାନ୍ତେ ।

ବଶ୍ୱ— ଅନେକ ଦିନରେ ଆଶାଟି ସଫଳ ହେବାକୁ ଯାଉଛୁ । ଦଉଖାସ୍ତୁଟା ଯଦି ଆସିଯିବ । ତାହା ହେଲେ ପୋଷ୍ଟଟି ଆମ ହାତରେ ଅଛୁ ବୋଲି ଭାବ । ଡ଼. ପି. ଆଇ ତ ମୋର ଅନ୍ତରଙ୍ଗ ବନ୍ଧୁ—

ଧୂର୍ଜଟି—ଦରଖାସ୍ତ ଆଜିତ ଦେଇ ନେଇଥିବ । ଏଥିରେ ସନ୍ଦେହ କରିବାକୁ କଛି ନାହିଁ —

ବଶ୍ୱମ୍ବର—(ଧୂର୍ଜଟିଙ୍କୁ ଧରି) ଗାୟତ୍ରୀ ମୋର ସବ ଶେଷର ସନ୍ତାନ ବୁଝିଲ—ହଁ ଚାଲ, ଚାଲ ଗାଡ଼ି ପାଖରେ ଛାଡ଼ି ଦେଇ ଆସିବ । (ଉଭୟେ ପ୍ରସ୍ଥାନ)

ସଦା—(ବଂଙ୍ଗକରି) (ମୁଖଭଙ୍ଗି ସହ) ଦେଖିଲ କକେ ? ହଁ କହୁଛ ତ ଶିବୁମିଶ୍ର ଇମିତ ବଡ଼ଲୋକ ହୋଇଥାନ୍ତା ବୋଲି । ଦେଖ ବାଳବସ୍ଥା ଡେଇଁଲା ପରି ଛନ ଛନ କନ କନ ହୋଇ ଏତେ ଢ଼ିଆଁ ମାରିଲ, କଥା ପଦେ କହିବ ବୋଲି । ହେଲା ? ଗାଁରେ ଶିବୁମିଶ୍ର ଅ.ଛୁ ଆମ ପାଖକୁ । ଏଠି ବଡ଼ ଲୋକ ବୋଲି ପଛରେ ଗୋଡ଼େଇ ମୁହଁ ଦେଖି—

ଚନ୍ଦ— ଏଠି ମୁହଁ ଦେଖି ପାରୁନେ । (ବହୁ ଉଦ୍‌ବେଗରେ) (ନସ୍ୟ ଗ୍ରହଣ କରି) (ଚିନ୍ତା କରି) ଗୋଟେ କଥା କଲେ ହୋଇ ଯିବରେ ସଦେଇ । କହି ଦେବା—

ସଦା— ମୁଁ କଣ ଜାଣିନାହିଁ କି କକେ । କହି ଦେବଟ "ଗଲି, ଦେଖିଲି, ସବୁ କରି ଦେଇ ଆସିଛି—"

ଚନ୍ଦ— ଗୁଲେ ସଦେଇ, ଝଉଡ଼ା ଅନ୍ନ ଖାଇ ଗାଁକୁ ଫେରିଯିବା ।

ସଦା— ମାଇ କକେ, ମୋ ହାତରେ ପଇସା ନାହିଁ, ଘରୁ ମୋତେ ଟାଣି ଆଣିଛ । ମୁଁ ଆଜ ପଇସା ଆଣିନାହିଁ ।

(ଉଭୟେ ପ୍ରସ୍ଥାନ) (ପଟ ପତନ)

---

# ପ୍ରଥମ ଅଙ୍କ

## ତୃତୀୟ ଦୃଶ୍ୟ

ସ୍ଥାନ—ଶିବ ସୁନ୍ଦରଙ୍କ ବାସଗୃହ

ଶାନ୍ତ—(ପ୍ରବେଶ) ମୁଁ ଆଉ ଏମାନଙ୍କୁ ପାରିବ ନାହିଁ । ଏ ବର୍ଷର ଧାନ ଯାହାଥିଲା, ଶିବୁ ସେତକ ବନ୍ୟା ବିପତ୍ତିରେ ଖରଚ କରି ଦେଲା । ଆଉ ତିନିମାସ ଚଳିଲା ଭଳି ଗୁଡ଼ିଏ ରଖିଥିଲି । ଗାୟତ୍ରୀ ମା ବିଷ୍ଣୁ ମାଷ୍ଟ୍ରଙ୍କୁ ଡାକିଦେଲା । ଆପତ୍ତି କରନ୍ତି ନାହିଁ ଯେ ବୁଢ଼ା ଟିକିଏ ଆହାର ପ୍ରିୟ । ଏଣେ ଏ ଘରର ଅବସ୍ଥା ଏପରି ହେଲାଣି ! କରିବ କଣ ? ଧୂର୍ଜଟି ଯାହା କହୁଛନ୍ତି ସେକଥା ଯେ ସଂସାରର ବାସ୍ତବ ରୂପ । ଶିବକୁ ବୁଝାଇ କହି ତାକୁ ଥୟ କରିଦେଲେ ମୋ ମନ ଶାନ୍ତ ହୋଇଯିବ ।

ଶିବ— (ବଂଶୀର ହାତଧରି ପ୍ରବେଶ) ବୋଉ ! ବଂଶୀ ଆସିଛି । ଆଜି ସେ ଖାଇ ନାହିଁ ତାକୁ ପିଠା ଦେ ବୋଉ ।

ଗାୟତ୍ରୀ—(ପ୍ରବେଶ) (ବଂଶୀକୁ ଦେଖି) (ଶିବଙ୍କ ଆଡ଼କୁ ଅନେଇ)

ଶିବ— (ଗାୟତ୍ରୀଙ୍କୁ) ବଂଶୀକୁ ପିଠା ଦିଅ, ଘୋଡ଼େଇ ହେବାକୁ ଗୁଦର ଖଣ୍ଡେ ଦିଅ ।

ଶାନ୍ତ—ମୁଁ ଯାଉଛି ଗାୟତ୍ରୀ ମା, ପିଠା ଆଣିଦେବ (ପ୍ରସ୍ଥାନ)

ଗାୟତ୍ରୀ—(ମୁଗ୍ଧ ଦୃଷ୍ଟିରେ ଚାହିଁ) ଫୁଲମାଳ, ଚନ୍ଦନ ଚର୍ଚ୍ଚିତ ଦେହ ଲଲାଟରେ ବଜ୍ରସ୍ଥ ଟିକା ! କି ସୁନ୍ଦର ଦିଶୁଛ, ଯେପରି ବିବାହ ବେଦିର ବର—

ଶିବ— (ଗାଲରେ ମୃଦୁ ଆଘାତ କରି) ମୁଁ ଯେ ତୁମକୁ ନିତି ନୂଆଁ କରି ବିବାହ କରୁଛି ଗାୟତ୍ରୀ । (ଗଳା'ରୁ' ଫୁଲମାଳ ବାହାର କରି ମଥାର ଖୋସାରେ ପିନ୍ଧାଇ ଦେଇ) (ମୁହଁକୁ ଚାହିଁ ହସି) ହୁଁ ! ଏଇ ଫୁଲ ମାଳଟି ଗୁନ୍ଥୁଥିଲ ଗାୟତ୍ରୀ (ଦାନ୍ତ ଅଡ଼କୁ ଦେଖାଇ) ଦେଖିଲ ମୁଁ କମିତି ଦିଶୁଛି—"

ଗାୟତ୍ରୀ—(ଶିବଙ୍କ ଆଡ଼କୁ ଅନାଇ)

ଶିବ— ଦେଖିଲ ?

ଗାୟତ୍ରୀ—(ପ୍ରେମ ମୁଗ୍ଧ ଦୃଷ୍ଟିରେ ଚାହିଁ) କହୁଛ ଦେଖି ପାରୁନାହିଁ, । ଦର୍ପଣରେ ତୁମର ମୁହଁର ପ୍ରତିବିମ୍ବ ଦିଶୁଛି ।

ଶିବ— (ପିଠିରେ ହାତରଖି) ମୁଁ ବିସ୍ମୟ ବିହ୍ୱଳ ହୋଇ ଭାବୁଛି ଗାୟତ୍ରୀ ତୁମେ ମତେ—"

ଗାୟତ୍ରୀ—(କାନ୍ଧରେ ହାତରଖି) ତୁମେ ମତେ ଏତେ ସ୍ନେହ, ଏତେ ପ୍ରେମ—

ଶିବ—ତୁମେ ମତେ ଏପରି ଗମ୍ଭୀର ଭାବରେ ଉପଲବ୍ଧି କରି-
ପାରିଲ କପରି ? (ଶାନ୍ତିଙ୍କୁ ଦେଖି ପ୍ରସ୍ଥାନ ଉଦ୍ୟମ) (ଗାପୂର୍ଣ୍ଣୀ
ପ୍ରସ୍ଥାନ)

ଶାନ୍ତି—(ପ୍ରବେଶ) (ବଂଶୀକୁ ପିଠା ଦେବା, ବଂଶୀ ବସି ଖାଇବା)

ଶିବ—ବୋଉ ! ଏହି ବଂଶୀ ପିଲଟା ତାର ଏଇ ସାତ ବର୍ଷ
ବୟସରେ କି ସୁନ୍ଦର ପଢ଼ାଶୁଣା କରୁଛି, ଗୀତଗୁଡ଼ିକ
ମୁଖସ୍ଥ ରଖିଛି ! ବଂଶୀ, ଗୀତ ଟୋଟିଏ ଗାଇବୁଟି ବଂଶୀ !

ଶାନ୍ତି—ପିଲଟା ପିଠା ଖାଉଛି, ପରେ ଗୀତ ଗାଇବ ଯେ—

ଗାପୂର୍ଣ୍ଣୀ—(ପ୍ରବେଶ) ବୋଉ ବଂଶୀକୁ ଗୁଦରି ଦେବାକୁ କହୁଛନ୍ତି !

ଶାନ୍ତି—(ଦୁଃଖପାଇ) (ସ୍ୱଗତ) ଗାପୂର୍ଣ୍ଣୀ ମା ଆସି ପୁଣି ସେଇ କଥା
କହିଲଣି । ଗଲ ବର୍ଷଠୁ ସେଇ ମୁହଁପୋଛା ଖଦଡ଼ ଗୁଦରି
ଖଣ୍ଡିକ କିଣି ରଖିଚି, ଆଜି ଜନ୍ମଦିନରେ ଦେବ ବୋଲି—

ଶିବ—କଣ ଭାବୁଛୁ ବୋଉ ?

ଗାପୂର୍ଣ୍ଣୀ—ବୋଉ ଭାବୁଛନ୍ତି, ଖଣ୍ଡିଏ ଗୁଦରି ଅଛି, ସେ ଖଣ୍ଡିକ ଆଜି
ଜନ୍ମଦିନରେ ପୁଅକୁ ଦେବେ । (ପ୍ରସ୍ଥାନ)

ଶିବ—(ଶାନ୍ତିଙ୍କ ପାଖକୁ ଅଗ୍ରସର ହୋଇ) (ହସି) ବୋଉ ! ଖଣ୍ଡିଏ
ଗୁଦରି ଅଛି, ବଂଶୀକୁ ଦେବୁ କି ମୋତେ ଦେବୁ ବୋଲି
ଦ୍ୱିଧାରେ ପଡ଼ିଯାଇଛୁ ନା ? ଜାଣୁ ବୋଉ ! ବଂଶୀର ମା
ନାହିଁ, ତୁ ଆଜି ତାର ମା ହୋଇ ତାକୁ ଖଣ୍ଡେ ଗୁଦରି ଦେ !
ତୁ ମୋର ମା, ବଂଶୀର ମା, ଉତ୍କଳ ଜନନୀ, ତୁ ଭାରତ
ଜନନୀ, ତୁ ଯେ ବସୁମାତା ।

ଶାନ୍ତି—(ଶିବଙ୍କ ମଥାରେ ହାତ ଦେଇ) ସର୍ବଂସହା ବସୁମାତାର
ପରି ମୁଁ କେବେ ହୋଇପାରିବ କି ବାପ ! (ଆବେଗରେ)

(ହସିଦେଇ) ତୁ କେତେ ଲମ୍ବା ହୋଇଗଲୁଣି ଶିବୁ, ତୋ ମଥା ଉପରକୁ ମୋ ହାତ ଯାଉ ନାହିଁ ।

ଶିବ—(ହସି) ଆଜ ଜନ୍ମଦିନରେ ଏତେ ଲମ୍ବା ହୋଇଯାଇଛି ଯେ ମଥାଟା ଆକାଶକୁ ସ୍ପର୍ଶ କଲଣି । ମୁଁ ସେ ଉପରୁ ଦେଖୁଛି, ଏ ବିଶାଳ ପୃଥିବୀପୃଷ୍ଠରେ ଗୋଟିଏ ଉଜ୍ଜ୍ୱଳ ପ୍ରଦୀପ ପରି ଦିଶୁଛି ମୋତେ—

ଗାୟତ୍ରୀ—(ପ୍ରବେଶ) ଆପଣମାନେ ଆକାଶ, ପୃଥିବୀ କଥା ଆଲୋଚନା କରୁଛନ୍ତି, ଏଣେ ବଂଶୀ ଏକା ହୋଇ ବସିଛି । (ପାଖକୁ ଯାଇ) ଦେଖନ୍ତୁ ବୋଉ, ବଂଶୀର ମୁହଁଟି କେଡ଼େ କୁନ୍ଦଫୁଲ ପରି ସୁନ୍ଦର ଦିଶୁଛି ।

ଶିବ—ବଂଶୀ ଖାଇ ସାରିଲଣି । ତାକୁ ମୋର ଜନ୍ମଦିନର ଉପହାର ବୋଲି ମୋର ସାଇକଲଟା ଗୃହର ଖଣ୍ଡିକ ଦେ ବୋଉ !

ଶାନ୍ତି—(ପ୍ରସ୍ଥାନ କରୁ କରୁ) ତୋହର କଥା ଚହ୍ନ । କିନ୍ତୁ ସେ ଖଣ୍ଡିକ ଯେ ଅନେକ ଦିନରୁ ଉତ୍ସର୍ଗ କରିଦେଇଛି । (ପ୍ରସ୍ଥାନ)

ଗାୟତ୍ରୀ—ବୋଉ ! ଗୃହର ଯେ ବଡ଼ ସିନ୍ଦୁକରେ ଅଛି । ଆପଣ ବଡ଼ ସିନ୍ଦୁକ ଉପରୁ ଶ୍ରେଷ୍ଠ ସିନ୍ଦୁକଟା ଉଠାଇ ପାରିବେ ନାହିଁ । ରହନ୍ତୁ, ମୁଁ ଆସୁଛି—(ପ୍ରସ୍ଥାନ)

ଶିବ—ସମୟେ ସମୟେ କାହିଁକି କେଜାଣି ମୋର ଭାବନା ହେଉଛି, ମୋ ବୋଉ ଆଉ ଗାୟତ୍ରୀ ଦୁଇ ଭଉଣୀ କିମ୍ବା ଦୁଇ ସଖୀ ହୋଇ ଜନ୍ମ ହୋଇଥିଲେ ଗତ ଜନ୍ମରେ । ଦୁହିଁଙ୍କ ଭିତରେ କି ଗଭୀର ସ୍ନେହ, ଭକ୍ତି ପରସ୍ପରକୁ ସଂଯୁକ୍ତ ରଖିଛି ! ମନୁଷ୍ୟ ମନୁଷ୍ୟ ଭିତରେ ଯେଉଁ ଦୁର୍ଭେଦ୍ୟ ବ୍ୟବଧାନ, ଏ ଦୁହିଁଙ୍କ ଭିତରେ ସେଥିର କ୍ଷୀଣଛାୟା ମଧ୍ୟ ପଡ଼ ନାହିଁ !

ଗାୟତ୍ରୀ—(ପ୍ରବେଶ) (ବଂଶୀର ଦେହରେ ଗୋଟିଏ ଚାଦର ଘୋଡ଼େଇ ଦେଇ)

ଶିବ—ବଂଶୀ, ଯା, ଘରକୁ ଯାଇ ବସି ଗୀତଗୁଡ଼ିକ ମୁଖସ୍ଥ କରିଦେବୁ । ଆଜି ଛୁଟି । ବୁଝିଲୁ, କାଲି ସକାଳୁ ସ୍କୁଲକୁ ଚାଲିଯିବୁ ।

ବଂଶୀ—(ମସ୍ତକ ସଞ୍ଚାଳନ କରି ପ୍ରସ୍ଥାନ)

ଶାନ୍ତ—(ଅଗ୍ରସର ହୋଇ ଆସି) କ'ଣ ଭାବୁଛ ବାପା !

ଶିବ—ଭାବୁଥିଲି, ସେଇ ପାଠଶାଳାର କଥା । ପାଠଶାଳାଟି ଆଉ ଟିକିଏ ଯଦି ବଡ଼ କରିପାରନ୍ତି—ତୃତୀୟ ଶ୍ରେଣୀରୁ ନାନା ବାଧାବିଘ୍ନ ଅତିକ୍ରମ କରି ଦଶମ ପର୍ଯ୍ୟନ୍ତ ଆସିଲା । ପାଠଶାଳାର ଆର୍ଥିକ ଅବସ୍ଥା ଯାହା, ଉପନିଷଦ୍ ଇତ୍ୟାଦି ପଢ଼ାଇବା ନିମନ୍ତେ ଜଣେ ଅଧ୍ୟାପକଙ୍କୁ ନିଯୁକ୍ତ କରିବା ସମ୍ଭବ ହେଉ ନାହିଁ । ତୋର ସଞ୍ଚିତ ଅର୍ଥ ସବୁ ନିଶେଷ ହୋଇଗଲାଣି । ମୁଁ ଜାଣେ, ତୋ ହାତରେ ଆଉ କିଛି ନାହିଁ । ତୋର ଦୁଃଖ ହେବ ବୋଲି ତୋତେ କିଛି କହି ନ ଥିଲି ।

ଶାନ୍ତ—(ଅଗ୍ରସର ହୋଇ ପିଠିରେ ହାତ ରଖି) ବାପା ! ଆଜି ତୋତେ ଗୋଟିଏ କଥା କହିବି ବୋଲି ଭାବୁଛି । କହିବାକୁ ଅବଶ୍ୟ ଇଚ୍ଛା ହେଉ ନାହିଁ; ତଥାପି ମୋତେ କହିବାକୁ ପଡ଼ିବ । ଏଇ ଯେଉଁ ଆର୍ଥିକ ଅବସ୍ଥାର କଥା କହିଲୁ, ତାହା ହିଁ ଆମର ବିଚାର କରିବା ଉଚିତ ଆଉ ଆବଶ୍ୟକ । ଧୂର୍ଜଟି ଭାଇନା ଆସିଥିଲେ—

ଶିବ—ମୁଁ ତାଙ୍କୁ ଦୁଆର ମୁହଁରେ ଦେଖିଲି, କିନ୍ତୁ ସେ ମୋତେ ନ ଦେଖିଲା ପରି ଭିତରକୁ ଚାଲିଆସିଲେ ।

ଶାନ୍ତ—ତୁ ତାଙ୍କ କଥା ଶୁଣୁ ନାହୁଁ ବୋଲି ବଡ଼ ଦୁଃଖିତ ସେ । ତେଣୁ ତୋର ଶ୍ୱଶୁର ଗଞ୍ଜଣା ଦେଉଛନ୍ତି । (କାଗଜ ଦେଇ) ଏଇ କାଗଜ ଦେଇଛନ୍ତି, ଦରଖାସ୍ତ କରିଦେ ବାପ, ଗୁରୁଜନଙ୍କ କଥା ଅମାନ୍ୟ କର ନା ।

ଶିବ—ବୋଉ !

ଶାନ୍ତ—କ'ଣ ବାପ ! ଆଜି ତୋର ଜନ୍ମଦିନରେ କ'ଣ ଗୋଟାଏ କହି ତୋ ମନରେ ଦୁଃଖ ଦେବାକୁ ଯାଉଛୁ । ସବୁଦିନେ ତ ତୋର ଏ କରୁଣ ରସବୋଳା ମୁହଁରେ ହସ ଟିକଏ ଦେଖିବା ସ୍ୱପ୍ନ ହେଉଛି । ଆଜି ବ ହେଲେ ଟିକଏ ହସି ଖେଳି ରହିଥାନ୍ତୁ । ସେ ଆନନ୍ଦଟିକକ ମଧ୍ୟ ମୁଁ ତତେ ଦେଇ ପାରୁ ନାହିଁ ।

ଶିବ—ଜନ୍ମଦିନ ତ ହସିବା ଖେଳିବା ଦିନ ନୁହେ ବୋଉ ! ବିଷ୍ଣୁ ମାଷ୍ଟ୍ରେ ଆସିବା ପୂର୍ବରୁ ମୁଁ ତୋତେ ସେହି କଥାଟି କହୁଥିଲି । ଆଜି ମନରେ ଏପରି ଗମ୍ଭୀର ଭାବର ସଞ୍ଚାର ହୋଇଉଠୁଛି ଯେ ତୋତେ ବୁଝେଇ କହିବାକୁ ଭାଷା ପାଉ ନାହିଁ । ଆଜିଯାଏ ଯେତେ ଜନ୍ମଦିନ ଅଜାଣତରେ ମିଶିଯାଇଛି, ସେସବୁ ଦିନଗୁଡ଼ିକର ମୂଲ୍ୟ ଆଜି ହିଁ ବୋଧ କଲା ପରି ମନେ ହେଉଛି । ଆଜିର ଜନ୍ମଦିନଠାରୁ ମୋର ମରଣର ପୂଜା ଆରମ୍ଭ ।

ଶାନ୍ତ—(କୁଣ୍ଢେଇ ଧରି) ନାହିଁ ମୋ ବାପ ! ଆଜିର ଏଭଳି ଦିନରେ ଅଶୁଭ କଥା କହନ୍ତୁ ନାହିଁ ।

ଶିବ—(ଗମ୍ଭୀର ଭାବରେ) ବୋଉ ! ଜନ୍ମ ସହିତ ମୃତ୍ୟୁ ଯୋଡ଼ି ହୋଇ ରହିଛି । ମରଣ ଚିନ୍ତା ହିଁ ମନୁଷ୍ୟକୁ ମହତ୍ କରେ । ପନ୍ଦର ବର୍ଷ ବୟସର ଜନ୍ମଦିନଠାରୁ ଭାବିଆସୁଛି କ'ଣ

ଗୋଟାଏ ବଡ଼ କାର୍ଯ୍ୟ କରିବ; କିନ୍ତୁ କୋଡ଼ିଏ ବର୍ଷ ଭିତରେ ମୁଁ କରିଛି କ'ଣ ! ଜନ୍ମଦିନର ଅଙ୍କ ଯେତିକି ବଡ଼ ହୋଇ ଆସୁଛି, ଜୀବନ-ଦ୍ୱାର ପାଖକୁ ମହାକାଳର ଆଗମନ ସେତିକି ନିକଟବର୍ତ୍ତୀ ହୋଇଆସୁଛି । କ'ଣ କରିଛି ବୋଉ ଏ ଦୀର୍ଘ କାଳରେ ?

ଶାନ୍ତି—ବାପ, ତୋ ନନା ଯେ ଅତି ଧର୍ମପରାୟଣ ଓ କର୍ମବିଶ୍ୱାସୀ ମନୁଷ୍ୟ ଥିଲେ, ତୁ ତାଙ୍କର ସନ୍ତାନ ।

ଶିବ—ହଁ ବୋଉ ! ଦେବତା ତୁଲ୍ୟ ପିତାଙ୍କର ଅଧମ ଅକ୍ଷମ ସନ୍ତାନ ମୁଁ । ତୋର ପରି ମା ଗର୍ଭରୁ ଜନ୍ମ ହେଲି । ଏ ଗାଁର ପ୍ରତ୍ୟେକ ବ୍ୟକ୍ତି ମୋତେ ସ୍ନେହଦେଇ, ଶ୍ରଦ୍ଧାଦେଇ କୋଳାଗ୍ରତ କରିଛନ୍ତି ସେଇ ଜନ୍ମକାଳରୁ । ସମୟେ ସମୟେ ମୁଁ ଅନୁଭବ କରିଛି, ଏ ପୃଥିବୀ ମୋତେ ତାର ସ୍ନେହକୋଳରେ ବସାଇ ଆବେଗମୟ ଚୁମ୍ବନରାଶିରେ ମୋର ଏ ଦେହଟାକୁ ଆଚ୍ଛାଦିତ କରିଦେଉଛି । କିନ୍ତୁ ବୋଉ ! ସେ ଗଭୀର ସ୍ନେହ, ଗଭୀର ଆବେଗମୟ ପ୍ରେମର ବିନିମୟରେ ମୁଁ କରିଛି କ'ଣ ? ତୋ ପାଖରେ ମୋର କ୍ଷୋଭ ପ୍ରକାଶ କରି ତୋ ମନରେ ଦୁଃଖ ଦେଉଛି ବୋଉ ! ଜାଣିଛି, ତୁ ମୋତେ କ୍ଷମା ଦେବୁ । ଆଜି ମନେ ପଡ଼ୁଛି—

ଶାନ୍ତି—କ'ଣ ମନେ ପଡ଼ୁଛି ବାପ ?

ଶିବ—ମନେ ପଡ଼ୁଛି, କଲେଜ ପ୍ରବେଶର ପ୍ରଥମ ବର୍ଷ ମୁଁ ଗୋଟିଏ ନାଟକ ଲେଖିଥିଲି । ଧୂର୍ଜଟି ଭାଇନାଙ୍କ ଆଦର୍ଶରେ ପଛରେ ଆମ ଗାଁର ବୈଦ୍ୟନାଥ, ଶଙ୍କର, ଦ୍ୱାରକା ଆଉ ମୁଁ ରହିଥିଲୁ । ସେ ସମୟରେ ବିଚ୍ଛିନ୍ନ ଉତ୍କଳକୁ ଏକତ୍ର କରିବା ନିମନ୍ତେ ଆମେମାନେ ପଣ କରିଥିଲୁ । ତାହାର

ଭିତରେ ଭାରତ ସ୍ୱାଧୀନତା-ସମରର କ୍ଷୀଣ ଶଙ୍ଖଧ୍ୱନି ଆମ-
ମାନଙ୍କର ଶ୍ରୁତିଗୋଚର ହେଉଥିଲା ।

ଶାନ୍ତି—ତୋର ନାଟକ ମୁଁ ପଢ଼ିଛି ବାପ !

ଶିବ—ନାଟକ ଅଭିନୟ କରିଥିଲୁ ଗୋଟିଏ ଛୁଟି ଦିନର ଦିବା-
ଭାଗରେ । ଅଧ୍ୟାପକେ, ଛାତ୍ର ସମସ୍ତେ ପ୍ରଶଂସା କରିଥିଲେ
ସେଦିନ । ନାୟକର ଭୂମିକାରେ—

ଶାନ୍ତି—ଅଭିନୟ କରିଥିଲେ ଧୂର୍ଜଟି । ନାୟିକା ସାଜିଥିଲୁ ତୁ ।

ଶିବ—ସେଦିନ ସନ୍ଧ୍ୟାରେ କାଠଯୋଡ଼ିର ପଥରବନ୍ଧ ଉପରେ
ବସି ଆମେ ସାତ ଜଣ ଯୁବକ ପ୍ରତିଜ୍ଞାବଦ୍ଧ ହୋଇଥିଲୁ
ଦେଶସେବା ବ୍ରତ ଗ୍ରହଣ କରିବୁ ବୋଲି ।

ଶାନ୍ତି—ସେସବୁ ପିଲା ଖେଳ ବାପ ! ସଂସାର ରଚିଲା ପରେ
ମନୁଷ୍ୟର ମନ ପରିବର୍ତ୍ତନ ହୋଇଯାଏ । ତୁମେ ସେଦିନ
ଯେତୋଟି ବାଳକ ପଣ କରିଥିଲ, ସବୁଗୁଡ଼ିକ ପରିବାର-
ଚିନ୍ତାରେ ରହିଗଲେଣି । କେହି କାହାରି ଚିନ୍ତା କରିବାକୁ
ଅବସର ନାହିଁ । ଧୂର୍ଜଟି ତୋର ଆପଣାର ବ୍ୟକ୍ତି, ତୁ
କପରି ସୁଖ ଶାନ୍ତିରେ ରହିବୁ ବୋଲି ଚିନ୍ତା କରୁଛନ୍ତି ।

ଶିବ—ମୁଁ ଜାଣେ ବୋଉ, ଧୂର୍ଜଟି ଭାଇନା ଅତି ଉତ୍ତମ ସ୍ୱଭାବର
ବ୍ୟକ୍ତି ।

ଶାନ୍ତି—ତୋ ପ୍ରତି ତାଙ୍କର ଏତେ ସ୍ନେହମମତା ଯେ ତୁ କପି ନ
କରି କଷ୍ଟ ପାଇବୁ ବୋଲି—

ଶିବ— ଶଙ୍କିତ ହୋଇ ଯାଉଛନ୍ତି ।

ଶାନ୍ତି—ସେଇ ଭୟରେ ତୋ ଶ୍ୱଶୁରଙ୍କର ମଧ୍ୟ ଅସ୍ଥିରତା
ବଢ଼ିଛି ।

ଶିବ—କିନ୍ତୁ ମୋର ତ ଭୟ ହେଉ ନାହିଁ । ପଢ଼ା ଶେଷ କରି ଆସି ଦେଖିଲି, ଗାଁର ଯେଉଁ କେତୋଟି ବୁଦ୍ଧିମାନ୍ ବାଳକ ପଢ଼ିବାକୁ ଯାଇଥିଲେ, ସେମାନେ ଆମର ଏ ନିରକ୍ଷର ପଲ୍ଲୀ-ସମାଜଠାରୁ ବିଚ୍ଛିନ୍ନ ହୋଇ, ପ୍ରାଣହୀନ ପୀଡ଼ିତ ଗାଉଁଲିଙ୍କଠାରୁ ସମ୍ପୂର୍ଣ୍ଣ ସମ୍ବନ୍ଧଶୂନ୍ୟ ହୋଇ ସୁଖରେ, ମହାନିଶ୍ଚିନ୍ତରେ ରହିଗଲେ —।

ଶାନ୍ତ—ଧୂର୍ଜଟି ସେଇ କଥା ବାରମ୍ବାର କହୁଛନ୍ତି । ଦେଶର କାର୍ଯ୍ୟ କରିବା ସହଜ ନୁହେ । ଯେଉଁମାନଙ୍କର ଉପକାର କରିବାକୁ ଯିବୁ—

ଶିବ—ସେଇମାନେ ହିଁ ନେଲିଟି ପଡ଼ି ନିନ୍ଦା କରିବେ । ନିନ୍ଦା କରିବା ତ ମନୁଷ୍ୟର ସ୍ୱଭାବ । ଏଇ ନିନ୍ଦାକୁ ଭୟ କରି ତ ଗନ୍ତବ୍ୟପଥରୁ ପଶ୍ଚାତ୍‌ପଦ ହେବା ଉଚିତ ନୁହେ । ପଢ଼ା ଶେଷ ହେବା ସଙ୍ଗେ ସଙ୍ଗେ ମୋର ଚାକିରିର ଅଭାବ ନ ଥିଲା । କିନ୍ତୁ ମୁଁ ଗାଁକୁ ଆସି ପଣ କରିଥିଲି, ଗାଁରେ ରହି ଗାଁର ମୂର୍ଖତା ଦୂର କରିବି ବୋଲି । ଆଜି ପୁଣି ସାତ ବର୍ଷ ପରେ ସେଇ ଧନ, ମାନର ଲୋଭରେ ସେ କଳ୍ପନାର ସ୍ମୃତିଟିକକ ଭୁଲିଯିବି କିପରି ବୋଉ ?

ଶାନ୍ତ—ଭୁଲିଯିବାକୁ ତ ମୁଁ କହୁ ନାହିଁ । ତୋର ପାଠଶାଳା ଯେଉଁପରି ଦୁଃଖେ ସୁଖେ ଚାଲିଛି, ସେଇପରି ଚାଲିଥିବ । ତୋର ଯେତେବେଳେ ଅର୍ଥର ଅଭାବ ରହିବ ନାହିଁ, ପାଠଶାଳାର ଅବସ୍ଥା ମଧ୍ୟ ସ୍ୱଚ୍ଛଳ ହୋଇଯିବ ।

ଶିବ—(ବିଷାଦରେ) ବୋଉ ! ମୁଁ ବୁଝିପାରୁଛି, ତୁ ଯାହା କହୁଛୁ ତୋର ହୃଦୟ ଭିତରର କଥା ନୁହେ । ତୁ ତ କେବଳ ମୋର

ସେବାକାର୍ଯ୍ୟ ବିଦ୍ୟାମା' ଦାସୀ ହାତରେ କରାଇ ନ ଥିଲୁ । ସେଇ ମାଆର ସନ୍ତାନ ମୁଁ ।

ଶାନ୍ତ—ବାପ ! ତୋ ମୁହଁରୁ ଏକଥା ଶୁଣିଲା ପରେ ମୋର ଆଉ କହିବାକୁ କିଛି ନାହିଁ । ମୁଁ ତୋତେ ଯେଉଁ ଦୃଷ୍ଟି ଦେଇ ଦେଖୁଛି, ଯେଉଁ କାନ ଦେଇ ତୋ କଥା ଶୁଣୁଛି, ଯେଉଁ ଅନୁଭୂତି ନେଇ ତୋ ଦେହର ସ୍ପର୍ଶ ଅନୁଭବ କରୁଛି, ତୁ ତୋର ପାଠଶାଳାଟିକୁ ଯଦି ସେହି ଭାବରେ ହିଁ ଦେଖୁଥିବୁ, ତେବେ ଧୂର୍ଜଟିର କମ୍ବା ମୋର କାହାର ହେଲେ ଶକ୍ତି କି ସାହସ ହୋଇପାରିବ ନାହିଁ ତୋତେ ସେ ଆସନରୁ ଘୁଞ୍ଚାଇ ଦେବାକୁ ।

ଶିବ—(ଆବେଗରେ) ମୋତେ ଆଶୀର୍ବାଦ ଦେ ବୋଉ !

ଶାନ୍ତ—ହଁରେ ବାପ, ତୋତେ ମୁଁ ଆଜି ମୋର ପିତୃପିତାମହଙ୍କର ହୋଇ ଆଶୀର୍ବାଦ ଦେଉଛି । ତୋର ସେ ବିଦ୍ୟାମନ୍ଦିରଟି ଚିରକାଳ ସଜୀବ ହୋଇ ରହୁ । ଆମେ ତୀର୍ଥସ୍ନାନ କରି ଦେବତା ଦର୍ଶନ କରି ଯାଉଛେ । କାଠ ପଥର ଉପରେ ଦେବଦେବୀ-ପଦଚିହ୍ନ ଦେଖାଇ ଦେଉଛନ୍ତି ପୂଜକମାନେ । ସେଇପରି ତୋର ଏ ବିଦ୍ୟାମନ୍ଦିରଟି ତୋର ଦେହ-ମନର ସକଳ ପବିତ୍ରତାର ସଙ୍କେତ ଧରି ଦେଶର ପବିତ୍ର ତୀର୍ଥକ୍ଷେତ୍ର ହୋଇ ରହୁ ।

ଶିବ—ବୋଉ, କେବଳ ସେତିକି ନୁହେଁ, (ଅବେଗରେ) ମୋତେ ଆଶୀର୍ବାଦ ଦେ । ମୋର ଏ ଜୀବନ ପଣ କରି ତୋର ଏ ଜନ୍ମଭୂମିର ସେବା କରିବି । ମୋ କାନକୁ ଡାକ ଶୁଭୁଛି ବୋଉ ! ପୂର୍ବଜନ୍ମର ସମସ୍ତ ମହତ୍ କାମନା, ମହାନ୍ ବାସନା ଅପୂରଣ ହୋଇ ଏ ପ୍ରାଣରେ ରହିଛି । କେତେ ଅଧା କାର୍ଯ୍ୟ

ଫେଡ଼ିବସିଛି, କେତେ ଆରମ୍ଭ କରିବାକୁ ଅଛି । କିନ୍ତୁ ମନୁଷ୍ୟର ଆୟୁଷ ଯେ ଅତି କମ୍ । ତୋର ଆଶିଷ ହସ୍ତର—

ଶାନ୍ତି—(ପିଠିରେ, ମଥାରେ ହାତ ବୁଲାଇ) ବାପ ! ତୋର ପିତୃ-ପିତାମହଙ୍କ ପୁଣ୍ୟ ସମ୍ପଦରେ ତୋର ହୃଦୟ ପରିପୂର୍ଣ୍ଣ ହେଉ । ବାପ ! ତୋ ଦେହ ମନରେ ଅସୀମ ଶକ୍ତି ସଞ୍ଚାର ହେଉ । ପବିତ୍ର ଭାବରାଶି ତୋର ଏହି ଅନ୍ତଃକରଣରେ ଏକତ୍ର ହୁଅନ୍ତୁ ।

ଶିବ—(ଆବେଗରେ) ମୁଁ ସମସ୍ତଙ୍କଠାରୁ ସ୍ୱତନ୍ତ୍ର ହୋଇ ରହି ଚିନ୍ତା କରିବି, ନିଜକୁ ବଡ଼ କରି ଦେଖିବି, କିନ୍ତୁ ଅନ୍ୟକୁ ଦେଖାଇବି ନାହିଁ, ସମସ୍ତ ପ୍ରକାର ବନ୍ଧନ ଭିତରେ ସମ୍ପୂର୍ଣ୍ଣ ମୁକ୍ତ-ଆତ୍ମା ହୋଇ ରହିବି ।

ଶାନ୍ତି—ମୋ ବାପ ! ତୋର ସମସ୍ତ ଜଡ଼ ଅବସାଦ ଦୂର ହେଉ ।

ଶିବ—ଏ ଜନ୍ମରେ ଆଜି ମୋର ନବ ଜୀବନ ଲାଭ ହେଉ ।

ଶାନ୍ତି—ତୋର ଭଗବାନ ତୋତେ ସାହସୀ କରନ୍ତୁ ।

ଶିବ—ତୋହର ପ୍ରାର୍ଥନା ସଫଳ ହେଉ ବୋଉ ! ତୁ ମୋର ବୋଉ, ତୁ ମୋର ଜନ୍ମଦାତ୍ରୀ, ତୋତେ ମୁଁ ଚିରକାଳର ମନୁଷ୍ୟ କରି ଅମୃତ କରି ରଖିଦେବି ।

ଶାନ୍ତି—ବାପ, ମୋ ବାପ ! ଖ୍ରୀଷ୍ଟଙ୍କ ପ୍ରତିଜ୍ଞାଠାରୁ ଯେ ତୋର ଏ ପଣ ଆହୁରି ଦୁଃସାଧ୍ୟ । ଦେଶର ସେବା ବଡ଼ କଠୋର କର୍ମ ବାପ ! ଏ ବସୁନ୍ଧରା ଯେଉଁପରି ମନୋହାରିଣୀ, ତାହାଠାରୁ ଆହୁରି ଅଧିକ ଭୟଙ୍କରରୂପିଣୀ । ଏ ଜନସମାଜ ଯେ ରୁଦ୍ରରୂପୀ, ସେହି ରୁଦ୍ର ତୋର କଠୋର ତପସ୍ୟାରେ ତୁଷ୍ଟ ହୋଇ ତୋତେ ଜୟୀ କରନ୍ତୁ, ବର ପ୍ରଦାନ କରନ୍ତୁ । (ପ୍ରସ୍ଥାନ)

ଶିବ—(ମଥା ନତକରି ହାତଯୋଡ଼ି) ପିତା ! ହେ ପରମପିତା ! ହେ ଦେବପିତା ! ତୁମର ପଦତଳେ ଆଜି ଏ ଶୁଭକ୍ଷଣରେ ମୋର ଏ ଜୀବନ ଉତ୍ସର୍ଗ କରିଦେଲି ପ୍ରଭୁ ! ମୋତେ ଗ୍ରହଣ କର ପ୍ରଭୁ ! ମୋତେ ତୁମ ସେବାକାର୍ଯ୍ୟରେ ନିୟୋଗ କର । ଅକର୍ମଣ୍ୟ ମୁଁ, ମୋତେ ତୁମର ଅସୀମ କର୍ମସ୍ରୋତରେ ଭସାଇଦିଅ । (ପ୍ରସ୍ଥାନ)

ନେପଥ୍ୟ—(ଗୀତ)

ଉଦାସ ମନ ଭ୍ରମୁଛି ଆଜି
ଗ୍ରାମ ପ୍ରାନ୍ତର ବନେ ।
କି ଧନ ସେଠୁ ଖୋଜୁଛି କାହିଁ
ସେକଥା କେବା ଜାଣେ ?
ହାୟରେ ମୋର ଉଦାସ ପ୍ରାଣ,
ଖୋଜୁଛୁ ଆଜି ତୁ କେଉଁ ଧନ ?
ଖୋଜେ ରେ ଖୋଜେ ସେ ଧନ ଅଛି
ତୋହରି ଘର କୋଣେ ।
ମୁଦିଲେ ଆଖି ଦିଶିବ ଧନ,
ପୁଲକେ ପୂରି ଉଠିବ ମନ,
କେସନେ ଏହା ଲଭିଲୁ ବୋଲି
ବିସ୍ମିତ ହେବେ ଜନେ ।
ଜନନୀ ରୂପେ କରେ କେ ପୂଜା,
କେ କହେ ମୋର ହୃଦୟ-ରାଜା,
କେ କହେ ମୋର ଜୀବନ ଯିବ
ତାହାର ଅଦର୍ଶନେ ।

ଝାଳ ପଡ଼ୁଛି ଭିକାର ଝୁଲି,
ଭିକାରି-ପ୍ରାଣ ଖୋଜଇ ବୁଲି ।
ନୟନ ମୁଦି ମାଗ ରେ ମାଗ
ଝୁଲି ଭରିବ ଧନେ ।

ବସ୍ତୁ—(ପ୍ରବେଶ) ଆହା ! କି ସୁନ୍ଦର ଗଲା ଭିକାରି ବୁଢ଼ାର ! ଆଜି ସେ ଗୀତର ଭାବ, ଭାଷା ହୃଦୟ-ପଦ୍ମକୁ ସ୍ପର୍ଶ କରୁଛି । ଶିବବୋଉ ଶୁଣିଲେ ମୁଗ୍ଧ ହୋଇଯାଆନ୍ତେ । କାହିଁକେଜାଣି ତ କୁଆଡ଼େ ନାହାନ୍ତି ? (ଗୃହକୁ) ଭିକାରିଟା ଚାଲିଯିବ ଯେ, ଯାଏ ତାକୁ ଡାକି ଆଣେ । ଆଜି ଶିବର ଜନ୍ମଦିନଟା, କିଛି ଦେବା ଭିକାରି ବୁଢ଼ାର ବଡ଼ ଦୁଃଖୀ ଜୀବନ, ମୋ ଭଲ ଜଣେ ବୋଲି । (ପ୍ରସ୍ଥାନ)

ଶିବ—(ପ୍ରବେଶ) ଭିକାରିଟି କି ସୁନ୍ଦର ଗୀତଟିଏ ଗାଇଲା ! ମୋର ମନେ ହେଉଛି, ମୋ'ର ମନର କଥା ସେ କହିଦେଇ ଗଲା । ହୃଦୟ ଭିତରେ ଯେ ଅସୀମ ଶକ୍ତି ପରିପୂର୍ଣ୍ଣ ହୋଇ ରହିଛି, ସେ ଶକ୍ତି ଆମମାନଙ୍କୁ ଅହରହ ଆହ୍ୱାନ କରୁଛି । ଆମେ ଜଡ଼ ପ୍ରାଣୀ ଗୋଟିଏ ହେଲେ ଡାକ ଶୁଣି ପାରୁ ନାହୁଁ ।

ଶାନ୍ତ—(ଆବେଗରେ) ଶିବୁ, ରାସ୍ତାରେ କିଏ ଗୀତ ଗାଇଲା ? ସେ ଗୀତର କଥାଗୁଡ଼ିକ ମତେ ଡାକିଲା ପରି ମୋର ମନେ ହେଲା ।

ଶିବ—ମୋର ମନେ ହେଉଛି, ଗୀତଟି ମୁହିଁ ରଚିଥିଲି । ମୁଁ କ'ଣ ଭାବୁଛି ଜାଣୁ ବୋଉ, ଭିକାରିଟିକୁ ମୋର ପାଠଶାଳାରେ

ରଖାଇଦେବ, ଯେଉଁ ସ୍ତ୍ରୀସମାନଙ୍କର ମଧୁର କଣ୍ଠ ଥିବ, ସେମାନେ ଭଜନ ଶିଖିବେ ।

ଶାନ୍ତ—ହଁ ରେ ବାପ ! ଅବସାଦ ସମୟରେ ଭଗବତ୍ ଭଜନ ଟିକିଏ ଶୁଣିଲେ ମନପ୍ରାଣ ଉଦ୍ୟମଶୀଳ ହୋଇଯାଏ ।

(ପ୍ରସ୍ଥାନ)

( ବିଷ୍ଣୁ, ଭିକାରି ପ୍ରବେଶ )

ବିଷ୍ଣୁ—ଏଇ ଯେ ଶିବ । ବୋଉ ଗୀତ ଶୁଣିବେ ବୋଲି ମୁଁ ଭିକାରିଟିକୁ ଡାକି ଆଣିଛି । ବୁଢା କପଡ଼ ଖଞ୍ଜଣି ବଜାଉଛି । ମୋର ଇଚ୍ଛା ହେଉଛି, ମୁଁ ଯଦି ଖଞ୍ଜଣିଟା ବଜେଇ ଗୀତ ଗାଆନ୍ତି !

ଶିବ—(ହସି) ଚେଷ୍ଟା କଲେ ତ ହୋଇଯାଆନ୍ତା ମାଷ୍ଟ୍ରେ ! ଆଚ୍ଛା, ଭିକାରି ଭାଇ !

ଭିକାରି—କିଏ ତୁମେ ? ଦେବତା ନା ମନୁଷ୍ୟ ! କଣ ବୋଲି ଡାକିଲେ ମୋତେ ଭିକାରି ଭାଇ ! ଭିକାରି କେବେ କାହାର ଭାଇ ହୋଇପାରେ ! ନା, ଭିକାରିକୁ ଦେଖିଲେ ଭାଇ ମଧ୍ୟ ଦୂରକୁ ଘୁଞ୍ଚିଯାଏ ।

ଶିବ—ତୁମର ଘର କେଉଁଠି ଭିକାରି ଭାଇ ?

ଭିକାରି—ଆଉ ଥରେ ସେଇ ଭାଇ ଡାକ ! ଆଉ ମୋର ଘର ! ଗଛତଳଟା ମୋର ଘର ବାବୁ ! ନର୍ମଳୀ ଗାଁର ବଡ଼ ବଟ ଗଛତଳଟା ମୋର ଆଶ୍ରୟ ।

ଶିବ—ତୁମର ଘର କାହିଁକି ନାହିଁ ଭିକାରି ଭାଇ ?

ଭିକାରି—ତୁମେ ମୋତେ କି କଥା ପଚାରୁଛ, ଏ ଯେ କଥା ନୁହେଁ, ଅମୃତରୁ ବିନ୍ଦୁଏ ଚାଖିଲା ପରି ଲାଗୁଛି । ଦେଶରେ ମନୁଷ୍ୟ ତ

ଅଛନ୍ତି, ଏପରି ଭାବରେ ତ କେହି କେବେ ପଚାରି ନ ଥିଲେ !
(ବ୍ୟଥିତ ଭାବରେ) ମୋର ଘର ନାହିଁ ।

ଶିବ—ଘର ନାହିଁ, ପରିବାର !

ଭିକାରି—ଦୁଇ ବର୍ଷ ତଳେ ନଈବଢ଼ିରେ ଘର ଭାସିଗଲା । ସ୍ତ୍ରୀ, ପିଲା ସେଇ ସମୟରେ ମରିଗଲେ ।

ଶିବ—(ଆବେଗରେ) କେଉଁ ଠାରେ ତୁମେ ଥିଲ ? ଆହା ! ତୁମର ଆଉ କେହି ନାହାନ୍ତି ?

ଭିକାରି—(ଦୁଃଖ ହତାଶାରେ) ହଁ ବାବୁ, ସ୍ତ୍ରୀ, ପିଲା ସବୁ ମଲେ; କେବଳ ମୁଁ ଅଛି । ମରିବାକୁ ଇଚ୍ଛା ହେଉ ନାହିଁ ବାବୁ, ଇଚ୍ଛା ହେଉ ନାହିଁ ।

ଶିବ—ଭିକାରି ଭାଇର ଘର ନାହିଁ, କେଡ଼େ ଦୁଃଖର କଥା ! ଚାଲ ମାଷ୍ଟ୍ରେ ! ଭିକାରି ଭାଇକୁ ଆମ ସ୍କୁଲଘରେ ନେଇ ରଖାଇ-ଦେବା । (ହାତ ଧରି) ଚାଲ, ତୁମେ କାଲିଠୁ ଆମ ପାଠଶାଳାର ଶିକ୍ଷକ ହୋଇ ରହିବ । (ପ୍ରସ୍ଥାନ)
(ବସ୍ତ୍ରୁ ପ୍ରସ୍ଥାନ)

ବସ୍ତ୍ରୁ—(ପୁନଃ ପ୍ରବେଶ) ଶିବବୋଉ ! ହଇହୋ ଶିବବୋଉ !

ଶାନ୍ତ—(ପ୍ରବେଶ) ମାଷ୍ଟ୍ରେ କଣ କହୁଥିଲେ ?

ବସ୍ତ୍ରୁ—ଭିକାରିଟିକୁ ସ୍କୁଲଘରେ ରଖାଇଦେବାକୁ ଶିବ ସାଙ୍ଗରେ ଧରିଗଲେ ଯେ ମୁଁ ଦୁଆର ମୁହଁରୁ ଫେରିଆସିଲି—

ଶାନ୍ତ—ଆଉ କଣ କିଛି ଆବଶ୍ୟକ ଅଛି କି ?

ବସ୍ତ୍ରୁ—ଶିବଟା ଏପରି ସ୍ୱଭାବର ମନୁଷ୍ୟ ଯେ ବାସ୍ତବ କଥା କିଛି ବୁଝୁ ନାହିଁ । ଭିକାରି ଭାଇ ବୋଲି ହାତ ଧରି ନେଇଗଲେ ତ ତାର ପେଟ ପୂରିବ ନାହିଁ !

ଶାନ୍ତ—(ହସି) ଓଃ ଏଇ କଥା ! ତୁମେ ତ ତାର ବାସ୍ତବ ଜ୍ଞାନ ମାଷ୍ଟ୍ରେ ! ପିଠା ଅଛି, ସେଥିରୁ କଛି ଦେଇଦେଉଛି । ରାତ୍ରରେ ଆପଣଙ୍କର ଖାଇବା ଚଳିବ, ଭିକାରିକୁ ଦେବେ । (ପ୍ରସ୍ଥାନ)

ବଷ୍ଟୁ—ହଁ' ପହରେ ତ ପେଟପୂରା ଖାଇ ପୀଡ଼ାରୁ ଉଠି ପାରୁ ନ ଥିଲି । ଏବଣି କଣ ସେ ଅବସ୍ଥା ଅଉ ଅଛି ? ଅସ୍ତେ ଆସ୍ତେ କ୍ଷୁଧା ଉଦ୍ରେକ ହୋଇଆସୁଛି । ଆଉ ଅଳ୍ପ ସମୟ ପରେ ପ୍ରଳୟ ଅଗ୍ନିରୂପେ ଦେଖାଦେବ । (ପେଟ ଦେଖାଇ) ପେଟଟି ପିଠିକି ଲାଗିଯାଇଛି, ଦେହରେ ଅଛି ଅସ୍ଥି ଚର୍ମ । ତାହା ବୋଲି ମୋର ଖାଦ୍ୟ ପରିମାଣ ଯେ କମ୍ ହେଉଛି, ତାହା ନୁହେଁ ।

ଶାନ୍ତ—(ପ୍ରବେଶ) (ଦୁଇଟି ପୁଡ଼ିଆ ଦେଇ) ଏଥିରେ ଚକୁଳି ଅଛି, ଭିକାରିକୁ ଦେବେ, ଏଇଟା ଆପଣ ଖାଇବେ ।

ବଷ୍ଟୁ—(ହସି) ଶିବବୋଉ ! (କାନମୁଣ୍ଡ ଅଣ୍ଡାଳି) ଠିକଏ ପଣା ପଣା ଦେଇଥାନ୍ତ—

ଶାନ୍ତ—ପେଟ ଭରି ହୋଇଯାଇଛି, (ହସି) ଉଠି ପାରୁ ନାହିଁ ବୋଲି କହୁଥିଲେ— ।

ବଷ୍ଟୁ—(ହସି) ସେ କେଉଁ ମହାପୁରୁଷ କହିଦେଇଛି, ସରୁନଖାର ସୁଅ ଟାଣ ବୋଲି ସେ ବାକ୍ୟଟି ମୋହର ଆଡ଼କୁ ପ୍ରଯୁଜ୍ୟ ହେଉଛି ଶିବବୋଉ !

ଗାୟତ୍ରୀ—(ପାଣିଗିଲାସ ଧରି ପ୍ରବେଶ) (ମଥା ନୁଆଁଇ) ଆପଣ ପଣା ଭଲ ପାଆନ୍ତି ବୋଲି ତିଆରି କରି ରଖିଦେଇଥିଲି ।

ବଷ୍ଟୁ—(ପଣା ନେଇ, ହସି) ଆଉ ମୋର କୌଣସି ଚିନ୍ତା ନାହିଁ । ଏ ପେଟର ଅଳିଟା ମୋ ମା'ର କାନରେ ପଡ଼ିଗଲାଣି । ମା

ଗାୟତ୍ରି ! କାଲିକି କାଞ୍ଜି ଟିକିଏ କରିବୁଟି ! ଭଲକରି ସରିଜଣା ଦବ, ବୁଝିଲ ! ସେଇ ମ, ମୋ ସ୍ତ୍ରୀ ଥିଲାବେଳେ ଭଲ କାଞ୍ଜି କରେ ।

ଶାନ୍ତ—କାଞ୍ଜିର ଚେରିଜଣା ବାସନାଟା ଏବେ ମଧ୍ୟ ନାକ ପାଖକୁ ଆସୁଛି ନା କଣ ମାଷ୍ଟ୍ରେ ? ଆଉ କଣ ଖାଇବେ କହିଦେଇ ଯାଆନ୍ତୁ ।

ବସ୍ତୁ—ମା, ଏଣ୍ଡୁରି ଟିଠା ଦି'ଖଣ୍ଡ କରିଥାନ୍ତ ! ମା ମୋର ମୋ ମନ ଜାଣି—

ଶାନ୍ତ—(ହସି) ହଁ, ସେ ଆପଣଙ୍କ ମନ ଜାଣି ଖାଇବାକୁ ଦେବ ଯେ ତେଣେ ଶିବୁ ଅପେକ୍ଷା କରିଥିବ, ପଶାଟା ଶେଷ କରିଦେଇ ଯାଆନ୍ତୁ ।

ବସ୍ତୁ—(ଗିଲାସ ରଖି) ଯାଉଛି ମା ! (ଗାୟତ୍ରୀକୁ ଗୃହିଁ ପ୍ରସ୍ଥାନ) (ଫେରି) କାଲି ଦି'ପହରର ଆଉଥରେ ତ ଆସିବ । (ସସ୍ନେହ ଲଜ୍ଜିତ ଭାବରେ) ଆଉ କଣ କହୁଥିଲି କି ମା, ଟିକିଏ ଘାଣ୍ଟ ତରକାରି କରିଥାନ୍ତ—ଏଇ ଫୁଲବଡ଼ି, ଆଳୁ, କଦଳୀ, ବାଇଗଣ, ବଜୁରି ଚଣା, ବୁଝିଲ ! (ପ୍ରସ୍ଥାନ ଉଦ୍ୟମ)

ଗାୟତ୍ରୀ—(ପଚାରୁ) ଘାଣ୍ଟ ତରକାରି କରିଦେଇଥିବ— !

ବସ୍ତୁ—(ଫେରି) ବୁଝିଲ, ଏଇ ତ ଶିବୁବୋଉ ସବୁ ଦେଇଛନ୍ତି । (ହସି) କଞ୍ଚା ଅଧସିଝା ଖାଇ ଜିଭଟା ବିସ୍ୱାଦ ହୋଇ ରହିଛି । ଆଜି ଏକା ଦିନକେ ଜଗତ ଗୋଠାସାକର ରୁଚିକର ଦ୍ରବ୍ୟ ଗୃହ୍ହୁଁଛି ସେ ।

ଶାନ୍ତ—ଗାୟତ୍ରୀ ମା ! କଦଳୀପତ୍ର ପୁଡ଼ାରେ ମାଷ୍ଟ୍ରଙ୍କୁ ଆଚାର ଟିକିଏ ଦେଇଦେ, ରାତିରେ ଖାଇବେ ।

ଗାୟତ୍ରୀ—ଆପଣ ରହନ୍ତୁ, ମୁଁ ଧରି ଆସୁଛି । (ପ୍ରସ୍ଥାନ)

ଶାନ୍ତ—ଯାହା ଦେଉଛି, ରାତି ନମନ୍ତେ ହୋଇଯିବ ତ ମାଷ୍ଟ୍ରେ ?

ବଷ୍ଟୁ—(ହସି) ସେ କଥା ଅଉ ପଚାର ନାହିଁ ଶିବବୋଉ ! ଭଲ ଦ୍ରବ୍ୟ ଦେଖିଲେ ମୁଁ ଚଞ୍ଚଳ ହୋଇପଡ଼େ । ଯାହାକୁ କହନ୍ତି ଆହାର-ଲୋଭ ।

ଚାମ୍ପୂର୍ଣୀ—(ପ୍ରବେଶ) (ଅାଚାର ଦେଇ) ଆପଣ ଲେମ୍ବୁ ଆଚାର ଭଲ ପାଆନ୍ତି ବୋଲି ଲେମ୍ବୁ ଅାଚାର ଦେଉଛନ୍ତି । ଆମ୍ବ ଆଚାର ଅଳ୍ପ ଦେଇଛି । (ପ୍ରସ୍ଥାନ)

ବଷ୍ଟୁ—ତାହାହେଲେ ଯାଉଛି ଶିବବୋଉ ! (ପ୍ରସ୍ଥାନ)

ଶାନ୍ତ—ଯାଏ, ଆଜି ଶିବୁର ଜନ୍ମଦିନ ବୋଲି ମନେରଖି ଧୋବଣୀ ଆସିଛି । ତାକୁ କଛି ଦେଇଆସେ । (ପ୍ରସ୍ଥାନ)

---

# ପ୍ରଥମ ଅଙ୍କ

## ଚତୁର୍ଥ ଦୃଶ୍ୟ

ସ୍ଥାନ—ଶିବସୁନ୍ଦରଙ୍କ ଶୟନକକ୍ଷ

(ପଲଙ୍କ ଉପରେ ଚାମ୍ପୂର୍ଣୀ ଆସୀନା) (ମାଳା ଗ୍ରଥନ)

ଚାମ୍ପୂର୍ଣୀ—(ମାଳାହସ୍ତରେ ଉଠିଆସି) (ଶିବଙ୍କ ଫଟୋ ଉପରେ ମାଳା ଅର୍ପଣ କରି) (ପ୍ରଣାମ କରି) ପ୍ରଭୁ ମୋର, ପ୍ରିୟତମ ମୋର, ପ୍ରିୟ ମୋର, ବନ୍ଧୁ ମୋର ତୁମେ ! ଯେତେବେଳେ ମୁଁ ଭାବେ ତୁମେ ମୋର, ଏକାନ୍ତ ଭାବରେ ମୋର ତୁମେ; ମୋର ପାଦ ଦୁଇଟା କମ୍ପିତ ହୋଇଯାଏ । ପଦ୍ମପତ୍ର ଉପରେ ଜଳ ଯେପରି ଟଳଟଳ ହୁଏ, ସେଇପରି ମୋ

ଦେବ ଗୋଟାକଯାକ ଝଲମଲ ହୋଇ ଗନ୍ତ କରେ ଏ ଧର ଉପରେ । ମନେ ପଡ଼ୁଛି—

ଶିବ—(ପ୍ରବେଶ କରି) କ'ଣ ମନେ ପଡ଼ୁଛି ଦେବ !

ଗାୟତ୍ରୀ—(ପ୍ରେମାବେଗରେ) (ବାହୁରେ ହାତ ରଖି ମୁହଁକୁ ଚାହିଁ) ମୋର ମନେ ପଡ଼ୁଛି, ସେଇ ଅତୀତ କାଳର କଥା । ଗୌରୀନାମାର ବର ଧୂର୍ଜଟି ଭାଇ ତୁମକୁ ଆଣି ଠିଆ କରାଇ ଦେଇଥିଲେ । କି ନୂତନ ବିସ୍ମୟ ମୁଁ ଅନୁଭବ କରିଥିଲି ସେଦିନ ! ଧୂର୍ଜଟି ଭାଇ ମୋତେ ବାରମ୍ବାର କହୁଥିଲେ, "ପ୍ରଣାମ କର, ପ୍ରଣାମ କର, ଆଖି ଖୋଲି ଦେଖ ।" ଏବେ ସୁଦ୍ଧା କାନକୁ ଶୁଭୁଛି ତାଙ୍କର ସେ କଥା । ପ୍ରଣାମ କରିବା କଥା ଭୁଲିଯାଇଥିଲି ! ମୋର ଅନ୍ତର-ଦେବତା ତୁମର ପଦତଳେ ରହିଥିଲା ଶତ ଶତ ପ୍ରଣାମ ।

ଶିବ—(ସୋହାଗରେ) ସେଦିନ ଯାହାକୁ ତୁମେ ଦେଖିଥିଲ, ମୁଁ କଣ ସେ ?

ଗାୟତ୍ରୀ—(ହାତ ଧରି ନେଇ ପଲଙ୍କ ଉପରେ ବସାଇଦେଇ) (ପାଦତଳେ ବସିପଡ଼ି) ତୁମେ ସେହି ମୋର ଆଜନ୍ମର ପରମ ଆଶ୍ଚର୍ଯ୍ୟ, ପରମ ସୁନ୍ଦର ମୂର୍ତ୍ତି । ବାର ବର୍ଷ ବୟସରେ ତୁମକୁ ମୁଁ ସେଦିନ ଦେଖିଥିଲି ।

ଶିବ—ତାପରେ ଭୁଲି ଯାଇଥିଲ ?

ଗାୟତ୍ରୀ—ନା, ନା, ଭୁଲି ନ ଥିଲି, ଦିନେ ସୁଦ୍ଧା ଭୁଲି ନ ଥିଲି । ତା ପରେ, ଅଠର ସାତୋଟି ବର୍ଷରେ ସକଳ ଋତୁର ସୁମନ-ସୌରଭ ବୋଳି ଦେଉଥିଲି ତୁମର ଏଇ ପାଦପଦ୍ମ ଯୁଗଳରେ ।

ଶିବ—(ମଥାରେ ହାତ ରଖି) ତୁମେ ଯେ ମୋତେ ଦେବତା କରି ଥୋଇଲଣି ଗାୟତ୍ରୀ ! ତୁମର ଏ ହୃଦୟ ଭିତରେ ପ୍ରେମ-ଭକ୍ତିର ଯେଉଁ ଜାହ୍ନବୀ ଧାରା ବହିଯାଉଛି, ସେ ପବିତ୍ର ଧାରାରେ ଅବଗାହନ କରିବାର ପୁଣ୍ୟ ସମ୍ପଦ କି ମୋର ଅଛି ?

ଗାୟତ୍ରୀ—ତା ପରେ କେତେ ଶ୍ରାବଣ ରାତିରେ ପ୍ରେମଜ୍ଜାନହୀନ ପ୍ରାଣ ମୋର ବ୍ୟଥିତ ହୋଇଉଠିଛି ତୁମରି ବିରହର ବେଦନାରେ । ବସନ୍ତ ସମୀରଣ ସ୍ପର୍ଶରେ ବିହ୍ୱଳ ହୋଇ-ଉଠିଛି ମୋର ମନ, ପ୍ରାଣ । ବୈଶାଖର ବିଜନ ମଧ୍ୟାହ୍ନରେ ବସି ତୁମରି ଏଇ ମୂର୍ତ୍ତିଟିକୁ ଦେଖି ଦେଖି ମୋର ବିଚ୍ଛେଦ-ବିଧୁର ପ୍ରାଣ ଖୋଜିଛି ତୁମରି ସାନ୍ନିଧ—

ଶିବ—(ମଥା ନତକରି ମୃଦୁହସି) ଗାୟତ୍ରୀ ! ମୋର ମନେ ପଡ଼ୁଛି । ବେଦୀ ଉପରେ ହୋମ-ଅଗ୍ନି ସମକ୍ଷରେ ତୁମରି ମାମୁଁ ତୁମ ମଥାର ଅବଗୁଣ୍ଠନ ଉନ୍ମୋଚନ କରି ଦେଖାଇ-ଦେଲେ । ପୁରୋହିତ ପଢ଼ୁଥିଲେ ଶୁଭଦୃଷ୍ଟିର ମନ୍ତ୍ର—

ଗାୟତ୍ରୀ—ତୁମରି କରୁଣାଭରା ଦୃଷ୍ଟିରେ ମିଳିତ ହୋଇଗଲା ମୋର ଆଖି । ମୋର ମନେହେଲା, ପ୍ରଭାତ ସୂର୍ଯ୍ୟ ପୂର୍ବ ଆକାଶରୁ ଆସି ବସିଯାଇଛନ୍ତି ହୋମାଗ୍ନି ପାଖରେ । ଓଃ ! ସେ କି ଆଶ୍ଚର୍ଯ୍ୟ ସୌନ୍ଦର୍ଯ୍ୟ ! ସେ ରୂପର ବର୍ଣ୍ଣନା କରିବା ଶକ୍ତି କି ମୋର ଅଛି ପ୍ରଭୁ !

ଶିବ—(ହାତ ଧରି ଉଠାଇ ପାର୍ଶ୍ୱରେ ବସାଇ) ଗାୟତ୍ରୀ ! ତୁମେ ଯେ ମୋର ଜୀବନର ଜପମନ୍ତ୍ର । ତୁମକୁ ମୁଁ ଅହରହ ପ୍ରତିକ୍ଷଣରେ ହୃଦୟରେ ଧାରଣ କରି ମୋର ଜନ୍ମ ଆଉ ଜୀବନକୁ ଧନ୍ୟ ମନେ କରୁଛି ।

ଗାୟତ୍ରୀ—କୈଶୋର କାଳରେ ଧୂର୍ଜଟି ଭାଇଙ୍କ ମୁହଁରୁ ଶୁଣିଥିଲି ତୁମର ପ୍ରଶଂସା । ତୁମକୁ ମୁଁ ପୂଜା କରୁଥିଲି ହୃଦୟ-ସିଂହାସନରେ ବସାଇ । ମନେହେଉଥିଲା, ତୁମକୁ ସମ୍ପୂର୍ଣ୍ଣରୂପେ ପାଇଛୁ । ସେଇ କଳ୍ପନାର ସ୍ୱର୍ଗରେ ହୋଇଉଠୁଥିଲି ବିହ୍ୱଳ । ଆଜ ହୁଏତ ସେଇ ତପସ୍ୟାରେ ହିଁ ଜୀବନକାଳ ଅତିବାହିତ ହୋଇ ଯାଇଥାନ୍ତା—

ଶିବ—(ଆନନ୍ଦ ଆବେଗରେ) ପ୍ରତ୍ୟକ୍ଷ ଭାବରେ ପାଇ—

ଗାୟତ୍ରୀ—(କମ୍ପିତ କଣ୍ଠରେ) ମୋର କଳ୍ପନାର ଦେବତାଙ୍କୁ ମୋର ସମସ୍ତ ଆବେଗ, ସକଳ ଅନୁରାଗ ଜଣାଇ ପାରୁଥିଲି । କିନ୍ତୁ ତୁମେ ପ୍ରତ୍ୟକ୍ଷ ମୋର । ତୁମକୁ ମୁଁ ପଦେହେଲେ କଥା କହିପାରୁ ନାହିଁ । ମୋର ମନେ ହେଉଛି, ତୁମକୁ ପାଇ ମଧ୍ୟ ପାଇପାରି ନାହିଁ । ସବୁ ଭକ୍ତି ବନ୍ଦନା, ସବୁ ପ୍ରେମର ଆବେଦନ କେଉଁଆଡ଼େ ଛିନ୍ନବିଚ୍ଛିନ୍ନ ହୋଇଯାଉଛି । ମୋର ମନର କଥାରୁ ସହସ୍ରେ ଅଂଶରୁ ଏକ ଅଂଶ ମଧ୍ୟ ପ୍ରକାଶ କରିପାରୁ ନାହିଁ ତୁମ ପାଖରେ । ମୋର ଭୟ ହେଉଛି, ତୁମେ ମୋର ଏ କ୍ଷୁଦ୍ର ହୃଦୟରୁ ଯାଇ ବିଶ୍ୱଜଗତର ହୃଦୟରେ—

ଶିବ—(ଗମ୍ଭୀର ଭାବରେ) ବାସ କରି ସାରିଲିଣି । କିନ୍ତୁ ଗାୟତ୍ରୀ, ମୁଁ କଣ ଭାବୁଛି ଜାଣ ? ଭାବୁଛି, ତୁମେ ହିଁ ମୋର ବିଶ୍ୱଜଗତ । ତୁମକୁ ଦେଖି, ତୁମକୁ ସ୍ମରଣ କରି ମୋର କର୍ମଜଗତର ଶକ୍ତିପୁଞ୍ଜ ତରଙ୍ଗାୟିତ ହୋଇଉଠେ । ତୁମେ ମୋର ଜୀବନ ପରିପୂର୍ଣ୍ଣ କରିଦେଇଛ ଗାୟତ୍ରୀ ! ତୁମକୁ ଦେଖିବା ପୂର୍ବରୁ ମୋର ଏ ହୃଦୟ-ରାଜ୍ୟ ଯେ ଶୂନ୍ୟହୋଇ ରହିଥିଲା । ତୁମେ ମୋତେ ପ୍ରେମର, ଭକ୍ତିର ଐଶ୍ୱର୍ଯ୍ୟରେ ଐଶ୍ୱର୍ଯ୍ୟଶାଳୀ

କରିଦେଇଛ । କର୍ମକ୍ଲାନ୍ତ ମୁହୂର୍ତ୍ତର ବିଶ୍ରାମଦାୟିନୀ ସୁରଭି କୁସୁମ ଲତାକୁଞ୍ଜ ତୁମେ ମୋର ।

ଗାୟତ୍ରୀ—ମୁଁ ତୁମର କୁସୁମକୁଞ୍ଜ ନୁହେ, ମୁଁ ତୁମର ଆଶ୍ରିତା ଲତା । ମୋର ଭୟ ହେଉଛି, ତୁମେ ତୁମର ଆଶ୍ରିତାକୁ ବିଚ୍ଛିନ୍ନ କରି ଛାଡ଼ିଦେଇ ଚାଲିଯିବ । ମୋ ଆଖି ଆଗରେ ସେଇ ଗୋଟିଏ ଦୃଶ୍ୟ ଦିଶୁଛି, ମହାପୁରୁଷ ବୁଦ୍ଧ ଯେଉଁପରି ଯଶୋଧାରାକୁ ପରିତ୍ୟାଗ କରି—

ଶିବ—(ଆବେଗରେ) ଗାୟତ୍ରୀ ! ଗାୟତ୍ରୀ ! ତୁମେ ଯେଉଁ ମହାପୁରୁଷଙ୍କ ନାମ ଉଚ୍ଚାରଣ କଲ, ସେ ଧ୍ୱନି ମୋର ହୃଦୟର ପ୍ରତ୍ୟେକ ତନ୍ତ୍ରୀରେ ବାଜି ପ୍ରତିଧ୍ୱନିତ ହେଉଛି ଅହରହ । ତୁମେ ଆଜି ସ୍ପଷ୍ଟ କରି ଦେଖାଇଦେଲ ସେ ମହା-ପୁରୁଷଙ୍କ ମହୋଜ୍ଜ୍ୱଳ ମୂର୍ତ୍ତି ।

ଗାୟତ୍ରୀ—ଆଜି ମୁଁ ସ୍ପଷ୍ଟ କରି ବୁଝିପାରିଲି । ତୁମେ ସେହି ମହାନ୍ ପଥର ପଥିକ ହେବାକୁ ଅଗ୍ରସର ହୋଇ ସାରିଲଣି ।

ଶିବ—(ହାତ ଧରି ମୁହଁକୁ ଚାହିଁ) ସେଇ ମହାନ୍ ପଥର ପଥିକ ହେବା ନିମନ୍ତେ ତୁମର ପ୍ରେମ, ତୁମର ଭକ୍ତି ହିଁ ମୋର ପାଥେୟ ଗାୟତ୍ରୀ ! ତୁମେ ତ୍ୟାଗର ମନ୍ତ୍ର ଶୁଣାଇ ମୋତେ ପ୍ରେରଣ କରିଦେଉଛ ବୃହତ୍ ସଂସାରର କର୍ମକ୍ଷେତ୍ରକୁ । ତୁମେ ମୋର ଅନ୍ଧକାରମୟ ଜୀବନଯାତ୍ରାପଥରେ ଆଲୋକ ସ୍ୱରୂପା ହୋଇ ଦଣ୍ଡାୟମାନା ହୁଅ ଦେବୀ ! ଆଜି ହିଁ ମୋର ଏହି ଜନ୍ମଦିନକୁ ତୁମେ ମୋର ଜାୟା, ଜନନୀରୂପେ ନବଜନ୍ମ-ଲାଭର ତିଥି କରିଦିଅ ଗାୟତ୍ରୀ !

ଶାନ୍ତ—(ନେପଥ୍ୟେ) ଗାୟତ୍ରୀ ମା, ଶିବୁ ଯେ କିଛି ଖାଇ ନାହିଁ ।

ଗାୟତ୍ରୀ—(ଧୀରେ ଧୀରେ ପ୍ରସ୍ଥାନ)

ଶିବ—(ଶାନ୍ତଭାବରେ ପଦଗୃରଣ କରି) ମୋର ଧାରଣା ଥିଲା, ଗାୟତ୍ରୀ ତାର ଚାତୁର୍ଯ୍ୟସୁଲଭ ପ୍ରେମ ଦେଇ ମତେ ଭୁଲାଇ ପାରୁଛି ବୋଲି । ବର୍ତ୍ତମାନ ଦେଖୁଛି, ସେ ମୋତେ ସମ୍ପୂର୍ଣ୍ଣରୂପେ ବୁଝିପାରୁଛି ।

ଶାନ୍ତ—(ଦୁଆର ପାଖରୁ) ବାପ ଶିବୁ !

ଶିବ—ବୋଉ ! ମୋତେ ବଡ଼ କ୍ଳାନ୍ତ ଲାଗୁଛି । ମୋ ପାଖକୁ ଆ ବୋଉ !

ଶାନ୍ତ—(ପ୍ରବେଶ) (ଟେଲିଗ୍ରାମ ଦେଖାଇ) ତୁ ପାଠଶାଳାକୁ ଯିବା ପରେ ଟେଲିଗ୍ରାମଟା ଆସିଲା ବାପ ! ଗାୟତ୍ରୀ ମା ପଢ଼ି କହିଲା ବାପା ପଠାଇଛନ୍ତି ବୋଲି । ଅନେକ କଥା ତ ଲେଖା ହୋଇଛି । ପଢ଼ିଲୁ ଶୁଣିବା ।

ଶିବ—(ଉଠିପଡ଼ି ପଦଗୃରଣ କରି) (ପଢ଼ି) ଶ୍ୱଶୁର ଲେଖିଛନ୍ତି— ଦରଖାସ୍ତଟା ଆଜି ହିଁ ଲୋକଦ୍ୱାରା ତାଙ୍କରି ପାଖକୁ ପଠାଇ ଦେବାକୁ ହେବ । ସେ ଆଉ ଗୋଟିଏ କଥା ମଧ୍ୟ ଲେଖିଛନ୍ତି— ଯଦି ଖବରକାଗଜକୁ କୌଣସି ଆନ୍ଦୋଳନ ସମ୍ବନ୍ଧୀୟ ଲେଖା ପଠାଇଥାଏ, ତେବେ ପ୍ରକାଶ ନ କରିବା ନିମନ୍ତେ ଲେଖିବାକୁ ହେବ । (ଆବେଗରେ) ହତଭାଗା ମୁଁ, ଗାୟତ୍ରୀର ପିତାଙ୍କ ଆଦେଶ ପାଳନ କରିପାରୁ ନାହିଁ ।

ଶାନ୍ତ—(ପିଠିରେ ହାତ ରଖି) ବାପ, ଶ୍ୱଶୁର ଯେ ତୋର ପିତୃତୁଲ୍ୟ, ତୋର ଶୁଭାକାଂକ୍ଷୀ, ତୋର ମଙ୍ଗଳ ନିମନ୍ତେ ସେ ଉପଦେଶ ଦେଇଛନ୍ତି—

ଶିବ—(ଶାନ୍ତଙ୍କ ପିଠିକୁ ଆଉଜି) ବୋଉ ! ମୋର ମଙ୍ଗଳାମଙ୍ଗଳ ଚିନ୍ତା ଯେ ସେଇ ଦେଶପିତାଙ୍କ ଚରଣତଳେ ଅର୍ପଣ କରି-ଦେଇଛି । ଏ ଜୀବନ ଯେ ଏ ଦେଶର ବୋଲି ମୋର

କାପୁରୁଷନବାକ୍ୟ ଉତ୍ସର୍ଗ କରିଦେଇଛୁ; କିନ୍ତୁ ସେ ଉତ୍ସର୍ଗର ସମାରୋହ କେବେ କେଉଁ ଶୁଭମୂହୂର୍ତ୍ତରେ ଘଟିଲା, ମୋର ତ ସ୍ମରଣ ହେଉ ନାହିଁ । ବୋଧହୁଏ ଆଜି ହିଁ ସେଇ ପ୍ରାଣସମର୍ପଣ କାର୍ଯ୍ୟ ସମାଧା କରିଛୁ ।

ଶାନ୍ତ—ଛି ବାପ ! ଏପରି ଅସ୍ଥିର ହୁଅ ନାହିଁ । ଧୂର୍ଜଟି ଯାଇ ଯାହା କହୁଥିଲେ ସେଥିରୁ ଜଣାଯାଉଛି, ଶ୍ୱଶୁର ତୋର ବଡ଼ ଚିନ୍ତିତ ହୋଇ ପଡ଼ିଛନ୍ତି । ବୋଧହୁଏ ଖବରକାଗଜକୁ ଲେଖା ପଠାଇ ଦେଇଛୁ, ସେଥିପାଇଁ ବ୍ୟସ୍ତ ଲାଗୁଛି । ତୁ ଚିଠିଖଣ୍ଡେ ଲେଖିଦେ ସମ୍ପାଦକଙ୍କ ପାଖକୁ, ସବୁ ଠିକ୍ ହୋଇଯିବ ।

ଶିବ—(ଗମ୍ଭୀରଭାବରେ ମୁହଁକୁ ଗୁହିଁ) ବୋଉ ! ତୁ ବୁଝି ମଧ ବୁଝି ପାରୁ ନାହୁଁ । ସବୁ ଜାଣି ଆଜି ଜାଣିବାକୁ ଇଚ୍ଛା କରୁ ନାହୁଁ । ଏଇ ଯେ ସନ୍ଧ୍ୟା ପୂର୍ବରୁ ତୁ ମୋତେ ଜନ୍ମଦିନର ଆଶୀର୍ବାଦ ଦେଇ କହିଲୁ ତୋର ଇଚ୍ଛା ସଫଳ ହେଉ ବୋଲି, ତୋର ସେଇ କଥାପଦକ ମୁଁ ଯେ ସତ୍ୟବାଣୀ ବୋଲି ଅଦୃଷ୍ଟ ହସ୍ତର ଇଙ୍ଗିତରୂପେ ମାନିନେଇଛି ବୋଉ ! ସାତ ବର୍ଷ ପୂର୍ବେ ମୁଁ ଏଇ ମାଟି ତଳେ ମୋର ଜନସେବା-ବ୍ରତର ବୀଜରୋପଣ କରିଥିଲି । ସେ ବ୍ରତବୀଜ ଅଙ୍କୁରିତ, ପଲ୍ଲବିତ, ପୁଷ୍ପିତ ହୋଇ ମୋତେ ଆମୋଦିତ କରି-ଦେଇଛି କେତେ ପ୍ରଭାତ ପ୍ରଦୋଷରେ । ଆଜି ମୋର ମନେ ହେଉଛି, ତାରି ଫଳର ରସ ଆସ୍ୱାଦନ କରି ମୋର ଅନ୍ତରର ସମସ୍ତ ଭାବନା ଉଦ୍‌ବେଳିତ ହୋଇ-ଉଠିଛି ।

ଶାନ୍ତି—ବାପ, ସହଜ ହୋଇଯା, ତୋର ଜୀବନର ଯାତ୍ରାପଥ ସୁଗମ ହେଉ ।

ଶିବ—(ଗମ୍ଭୀର ଭାବରେ ସ୍ମିତହାସ୍ୟ କରି) ସେଦିନ ସମ୍ବାଦପତ୍ର ପଢ଼ି ମୋତେ ପଚାରୁଥିଲୁ, ଜଣେମାତ୍ର ମନୁଷ୍ୟ ମହାତ୍ମା ଗାନ୍ଧି ଦେଶକୁ ସ୍ୱାଧୀନ କରିବେ ବୋଲି ଏକାକୀ ହୋଇ ଚିନ୍ତା କରୁଛନ୍ତି, କେତେ ନିଃସହାୟ ଲାଗୁଥିବ ତାଙ୍କୁ !

ଶାନ୍ତି—ବାପ, ମୁଁ ବଡ଼ ଦ୍ୱିଧାରେ ପଡ଼ୁଛି । ସଂସାର-ଆବର୍ତ୍ତରେ ପଡ଼ି—

ଶିବ—ଆତ୍ମଶକ୍ତି ସମ୍ବନ୍ଧରେ ଚିନ୍ତା କରିବାକୁ ଅବସର ମିଳୁ ନାହିଁ । ପୃଥିବୀରେ ଯେତେ ଯେତେ ମହାପୁରୁଷ ଜନ୍ମଗ୍ରହଣ କରିଛନ୍ତି, ସେମାନଙ୍କର ଗନ୍ତପଥ ଅତି ଦୁର୍ଗମ ଦୁଃସାଧ୍ୟ ଥିଲା ବୋଉ !

ଶାନ୍ତି—ଧୂର୍ଜଟିଙ୍କ କଥାରେ ତ ମୁଁ କେବେ ବିଚଳିତ ହେଉ ନ ଥିଲି—

ଶିବ—ଶ୍ୱଶୁରଙ୍କ କଥାରେ ବିଚଳିତା ହୋଇଉଠିଛୁ । କିନ୍ତୁ ବୋଉ, ମହତ୍‌କାର୍ଯ୍ୟ ଚିରକାଳ ନିମନ୍ତେ ମହତ୍‌କାର୍ଯ୍ୟ । ପୃଥିବୀରେ ଅସଂଖ୍ୟ ମନୁଷ୍ୟ ମନୁଷ୍ୟର ଦେହର ଚତୁର୍ଦ୍ଦିଗରେ ବିଚରଣ କରି ପୁଣି ଫେରିଯାଉଛନ୍ତି, କେହି ସେମାନଙ୍କର ପ୍ରବେଶ ପ୍ରସ୍ଥାନର କଥା ସ୍ମରଣ କରୁ ନାହିଁ । କିନ୍ତୁ ଏପରି ଜଣେ ଜଣେ ମନୁଷ୍ୟ ଆସୁଛନ୍ତି, ସେମାନେ ମରି ମଧ୍ୟ ଅମର ହୋଇ ରହି ଯାଉଛନ୍ତି ।

ଶାନ୍ତି—ତାହା ହିଁ ତ ଭାବୁଛି ବାପ ! ସେ କେଉଁ ଯୁଗରେ ପୃଥିବୀରେ ଶାନ୍ତି ସ୍ଥାପନ କରିବା ନିମନ୍ତେ ମହାତପୀ ଦଧୀଚି ଦେହତ୍ୟାଗ କରିଥିଲେ ।

ଶିବ—ସ୍ମରଣ କଲେ ସର୍ବାଙ୍ଗ ଶିହରି ଉଠୁଛି । ଏହି ଭାରତବର୍ଷରେ ରତ୍ନାକର ଆଦର୍ଶ ରାଜା ରାମଙ୍କୁ ସୃଷ୍ଟି କରିବା ନିମନ୍ତେ

ଉଇ ହୁଙ୍କାରେ ପରିଣତ ହୋଇ ଯାଇଥିଲେ । ସେଇ ଭାରତବର୍ଷର ମାଟିରେ ଏ ଶରୀର ଗଠିତ ହୋଇଛି । ଦେଶ ନିମନ୍ତେ ଏ ଦେହ ଦାନ କରିବାକୁ ମୋତେ ଅନୁମତି ଦେ ବୋଉ !

ଶାନ୍ତ—(ଭାବାବେଶରେ) ବାପ, ମୁଁ ତୋର ଅତି ଦୁର୍ବଳ, ମୂଢ଼ ଶିଶୁ କନ୍ୟା । ତୋର ଏ କଥା ଶୁଣି ମୋ ଦେହ-ମନ ସବୁ କମ୍ପି ଉଠୁଛି । (ଆବେଗରେ) ଆଜ ତୋର ପିତା ସ୍ୱର୍ଗରେ ବସି ବ୍ୟଥିତଦୃଷ୍ଟିରେ ଦେଖୁଥିବେ । ସ୍ୱାମୀ, ଗୁରୁ, ପତି-ଦେବତା ! ତୁମର ଏକମାତ୍ର ସନ୍ତାନକୁ ଅନୁମତି ଦିଅ । ଅନୁମତି ଦିଅ ଯେ ତାର ଦେଶ-ଦେବତାର ସେବାରେ ନିଜକୁ ନିଯୁକ୍ତ କରୁ ।

ଶିବ—ବୋଉ, ଶୁଣୁଛୁ ! ଏ ଶୁଣ ! ମହାମାନବ ମହାତ୍ମା ଗାନ୍ଧିଙ୍କ ଅହିଂସାର ମନ୍ତ୍ର, ସତ୍ୟର ମନ୍ତ୍ର ବଜ୍ରନିର୍ଘୋଷରେ ଧ୍ୱନିତ ହେଉଛି । ମୁଁ ଏ ଉତ୍କଳ ଦେଶର ପ୍ରତିନିଧି ହୋଇ ତାଙ୍କର ପଛରେ ରହି ତାଙ୍କର ଜୟଗାନ ଗାଇବି । ଭାରତ-ତପୋବନର ମହାତପସ୍ୱୀ ସେ, ଏ ମର୍ତ୍ତ୍ୟରେ ଆବିର୍ଭାବ ହୋଇଛନ୍ତି ପୁଣ୍ୟଭୂମି ଭାରତବର୍ଷକୁ ପରାଧୀନତା-ଶୃଙ୍ଖଳରୁ ମୁକ୍ତ କରିବା ନିମନ୍ତେ ।

ଶାନ୍ତ—ସେ ହିଁ ବୁଦ୍ଧ, ସେ ହିଁ ପ୍ରଜାକୁଳ-ହୃଦୟରଞ୍ଜନ ରାମ, ସତ୍ୟ ଅହିଂସାର ରମ୍ୟବୀଣା ବଜାଉଅଛନ୍ତି ସୁଦୂର ଗୁଜରାଟରୁ ।

ଶିବ—ଆଜ ମୋର ସର୍ବାବୟବ ଶ୍ରବଣଶକ୍ତିବିଶିଷ୍ଟ ହୋଇଛି ବୋଉ ! ସେଇ ବଳିଷ୍ଠ କଣ୍ଠର ବିପୁଳ ଅହ୍ୱାନ ପ୍ରବଳ ବେଗରେ ପ୍ରବେଶ କରୁଛି ମନୁଷ୍ୟଜାତିର ଶିରା

ଉପତ୍ୟକାରେ । ଆଜି ସେଇ ଉଦ୍‌ବୋଧନବାଣୀ ପୁନରାବୃତ୍ତି କରି ଶୁଣା ବୋଉ !

ଶାନ୍ତ—(ଆବେଗରେ) ଅତି ତୁଚ୍ଛ ମୁଁ, ଅତି ଦୁର୍ବଳ ମୁଁ, କେବଳ ନେତାଜୀ ନୂତନ ଶ୍ରୀରାମଚନ୍ଦ୍ରଙ୍କ ସେତୁବନ୍ଧରେ ସାହାଯ୍ୟ କଲା ପରି ମୋର ଏଇ ଧୂଳିକଣାଟି ଦାନ କରୁଛି । ହେ ଭାରତବର୍ଷ ! ତୁମେ ହିଁ ତାକୁ ସେବକର ସେବକରୂପେ ଗ୍ରହଣ କର । (ପ୍ରସ୍ଥାନ)

ଗାୟତ୍ରୀ--( ପ୍ରବେଶ ) (ପଦ ସ୍ପର୍ଶକରି) ସ୍ୱାମୀ, ପ୍ରଭୁ ! ମୋତେ କର୍ମହୀନା କରି ଛାଡ଼ିଯାଅ ନାହିଁ ପ୍ରଭୁ ! ମୁଁ ଯେ ଏକାନ୍ତ-ଭାବରେ ତୁମର ଆଶ୍ରିତା ।

ଶିବ—(ଶାନ୍ତ ସହଜଭାବରେ) ଏବେ କର୍ମର ସମୟ, ଧର୍ମପାଳନର ସମୟ ଗାୟତ୍ରୀ ! ଏ ସମୟରେ ଅଧୀର ହେଲେ ତ ଚଳିବ ନାହିଁ । ତୁମ ହାତରେ ମୁଁ ବୋଉକୁ ଦେଇ ନିଃସଂଶୟ ମନରେ ଦେଶ-ଦେବତାର ପଦ ବନ୍ଦନା କରିବାକୁ ଯାଉଛି ଗାୟତ୍ରୀ ! ତୁମେ ଆଜି ପ୍ରେମର ପ୍ରତିମୂର୍ତ୍ତିରୂପେ ମୋର ଦୃଷ୍ଟି ସମ୍ମୁଖରେ ଠିଆହୋଇ ତୁମର କୋମଳ କରପଲ୍ଲବରେ ମୋର ତପ୍ତ ଲଲାଟ ସ୍ପର୍ଶ କରିଦିଅ ଗାୟତ୍ରୀ ! ମୋର ତପ୍ତ ଲଲାଟରେ ସ୍ନିଗ୍ଧ ମାଧୁର୍ଯ୍ୟ ବୋଳିଦିଅ ଦେବୀ !

ଗାୟତ୍ରୀ—ମୁଁ ଦେବୀ ନୁହେ, ମୁଁ ତୁମର ରୂପଗୁଣମୁଗ୍ଧା ଗାୟତ୍ରୀ ! ଏ କି ଗୌରବରେ ମୋତେ ଗୌରବାନ୍ୱିତା କରିବାକୁ ଆରମ୍ଭ କରିଛ ପ୍ରଭୁ ! ମୁଁ ଯେ କିଛି ନୁହେ, ତୁମେ ମୋତେ ତୁମର ମହତ୍ ପ୍ରାଣର ମହାନ୍ ବାକ୍ୟ ଦେଇ ବଡ଼ କରିଦେଇଛ ।

ଶିବ—ତୁମେ ମୋର ମନ୍ତ୍ରମାନ୍ୟତା ଦେବୀ । ତୁମର ହାତରେ ମୋତେ ଉଠାଇଦିଅ ଦେବୀ ! ମୁଁ ପୁଣ୍ୟ ପ୍ରଦୀପ ସମାନ ଭାରତ-ଆକାଶରେ ପ୍ରଜ୍ୱଳ ଉଠିବି ।

ଗାୟତ୍ରୀ—(ହାତ ଉଠାଇ ନେଇ ମଥାରେ ରଖି) ମୋ ମଥାରେ ହାତ ରଖ, ମୋତେ ଆଶୀର୍ବାଦ ଦିଅ । ଯିବ୍ରକ କୌଣସି ପ୍ରକାର କ୍ଷୁଦ୍ର ଇଚ୍ଛା ଯେପରି ମୋର ଏ କ୍ଷୁଦ୍ର ହୃଦୟରେ ସଞ୍ଚାର ନ ହୁଏ । ଭାବପ୍ରବଣତାର ବିପୁଳ ଶକ୍ତି ସଞ୍ଚାର କରିଅ, ମୋର ଏ ଦୁର୍ବଳ ପ୍ରାଣରେ ତୁମର ବିରହର କଠୋର ଦୁଃଖ, ଦୁଃସହ ବେଦନା ସହ୍ୟ କରିବାକୁ ଶକ୍ତି ଦିଅ ପ୍ରଭୁ !

ଶିବ—ତୁମର ବିରହରେ ମୋର ଯେଉଁ ଅକଥିତ ଦୁଃଖ ହେବ—

ଗାୟତ୍ରୀ—ଚିର ଚିନ୍ତାଶୀଳ ଦେବତା ମୋର ! ଦୁଃଖ ଯେ ତୁମର ହୃଦୟର ସମ୍ପଦ । ଦୁଃଖର ସ୍ପର୍ଶରେ ତୁମର ସର୍ବାଙ୍ଗ ଶିହରି ଉଠେ । ସାମାନ୍ୟ ନାରୀର ବିଚ୍ଛେଦ ତୁମକୁ ଦୁଃଖ ଦେଇ-ପାରିବ ନାହିଁ ।

ଶିବ—ଗାୟତ୍ରୀ ! ଦେଶ ନିମନ୍ତେ ତୁମେ ଆଜ ଯେଉଁ ତ୍ୟାଗ ସ୍ୱୀକାର କରିଛ, ଏଇ ମନ୍ତ୍ର ହିଁ ମୋର କାନେ କାନେ ଅହରହ ଧ୍ୱନିତ ହେଉ ।

ଗାୟତ୍ରୀ—ଏ ମନ୍ତ୍ର ତୁମର ମୁହଁରୁ ଶୁଣିଛି ପ୍ରଭୁ ! ମୋତେ ଆଉ ଥରେ ଆଶିଷ ଦିଅ, ତୁମର ସକଳ ଶ୍ରେଷ୍ଠ କାମନା ମୋର କାମ୍ୟ ହେଉ । ତୁମେ ଏ ଦେଶର ଶ୍ରେଷ୍ଠ ସେବକ ବୋଲି ପରିଚୟ ପାଅ ସ୍ୱାମୀ ମୋର ! ତୁମକୁ ମୁଁ କେବଳ ଦେଶ-

ମାତୃକାର ପରମ ଭକ୍ତରୂପେ ପୂଜା ଅର୍ପଣ କରି ଜୀବନ-
ଯାପନ କରିଦେବ ।

ଶିବ—ମୋ ମୁହଁରୁ ସମସ୍ତ କଥା କାଢ଼ି ନେଇ ତୁମେ ଯେ ଆପଣାକୁ
ଆଶିଷ ଦେଇ ସାରିଲଣି ଗାୟତ୍ରୀ ! ଦୁଃଖର ରୁଦ୍ରରୂପ ହିଁ
ତୁମର ଧ୍ୟାନମୂର୍ତ୍ତି ହେଉ ।

ଶାନ୍ତ—(ପ୍ରବେଶ) (ଗାୟତ୍ରୀକୁ ଉଠାଇ) ଉଠ ମା, ତୋ ବାପା
ଆସିଛନ୍ତି ।

ଶିବ—(ଚମକି) କିଏ ! କିଏ !

ଶାନ୍ତ—ଶିବୁ, ବାପ ! ଶ୍ୱଶୁର ଆସିଛନ୍ତି ତୋ ସହିତ ପରେ
କଥା ହେବେ । ଆ, ଚାଲ ମା ଗାୟତ୍ରୀ !

(ଉଭୟେ ପ୍ରସ୍ଥାନ)

ଶିବ—(ଚଞ୍ଚଳଭାବରେ ପଦଚାରଣ କରି) ଯାତ୍ରାପଥର ବନ୍ଧୁ-
ଦେବତା ! ନା ! ନା ! ସେ ଯେ ଗାୟତ୍ରୀର ଜନ୍ମଦାତା ପିତା,
ଜନ୍ମମାଟିର ମୂଲ୍ୟ ବୁଝି ନାହାନ୍ତି । ବୁଝିବେ ଦିନେ ନିଶ୍ଚୟ ।

(ପ୍ରସ୍ଥାନ)

[ପଟ୍ଟପତନ]

———

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

ସ୍ଥାନ—ଶିବଙ୍କ ପାଠଶାଳା

(ବଷ୍ଟୁ, ରଘୁମଣି ଖଣ୍ଡେ ବେଞ୍ଚ ଉପରେ ଉପବେଶନ)

ବଷ୍ଟୁ—(ସେଇ ବେଞ୍ଚ ଉପରେ ମୁଢ଼ି ଆଉ ଆଳୁର) ହଇ ହେ ରଘୁମଣି !

ରଘୁ—(ପଢ଼ୁ ପଢ଼ୁ ) କଣ ଆଜ୍ଞା !

ବଷ୍ଟୁ—(ଆଳୁର ଖାଇ) ମୁଁ ପଚାରୁଥିଲି—

ରଘୁ—କଣ ପଚାରୁଥିଲେ ପଚାରୁ ନାହାନ୍ତି !

ବଷ୍ଟୁ—(ମୁଢ଼ି ଚୋବାଇ ଚୋବାଇ) ରଘୁମଣି ! (ଆଳୁର ଖାଇ) (ମୁଢ଼ି ଖାଇ) ରଘୁମଣି ! ମୁଁ ପଚାରୁଥିଲି, (ଆଳୁର ଖାଇ) ଆମର ଶିବସୁନ୍ଦରଙ୍କ ପ୍ରବନ୍ଧ ସମ୍ବନ୍ଧରେ। ତୁମେ କଣ୍ଟୁ ଭାବବ ନାହିଁ ରଘୁ ! ତୁମେ ମୋର ଅତି ଆପଣାର ପୁଅଭଳି, ଅନ୍ୟକୁ ପଚାରିବାକୁ ଲଜ୍ଜା ସଂକୋଚରେ ମଥାଟା ମାଟିରେ ମିଶିଯାଉଛି—

ରଘୁ—ଆଜ୍ଞା, ଆପଣଙ୍କର ଭୂମିକାଟି ସଂକ୍ଷିପ୍ତ କରି କଣ ପଚାରିବେ—

ବଷ୍ଟୁ—(ମୁଡ଼ି ଗଣ୍ଡିକ ଖାଇଦେଇ, ଆଗୁର ଖାଇ) ସଂକ୍ଷିପ୍ତ କରି ପଢ଼ୁଛି ମ ରଘୁମଣି ! ଏଇ ଆମର ଶିବସୁନ୍ଦରଙ୍କ ପ୍ରବନ୍ଧ କଥା । କଣ ଏ ଲେଖିଛନ୍ତି—

ରଘୁ—କାଲିର ପ୍ରବନ୍ଧଟାର କଥା ପଢ଼ୁଛନ୍ତି ନା ?

ବଷ୍ଟୁ—ଆସ୍ତେ ଆସ୍ତେ କୁହ ମ ! ଏଇ ଯେ ଲେଖିଲେ, "ଉତ୍କଳ ସ୍ୱତନ୍ତ୍ରୀକରଣ ବଙ୍କିମାଞ୍ଚଳର ମିଶ୍ରଣ" । ମୁଁ ତ କିଛି ବୁଝି ପାରିଲି ନାହିଁ ।

ରଘୁ—ଆଗୁରଟିଆ ! ଶେଷ କର ହାତ ଧୋଇ ଆସନ୍ତୁ ।

ବଷ୍ଟୁ—(ଗୁଟି ଖାଇଦେଇ) (ପ୍ରସ୍ଥାନ)

ଶିବ—(ପ୍ରବେଶ) ରଘୁମଣି !

ରଘୁ—(ଚମକି ଉଠିପଡ଼ି) ଆଜ୍ଞା !

ଶିବ—( ଗମ୍ଭୀର ଭାବରେ ) ଯେଉଁପରି ଅବସ୍ଥା ସୃଷ୍ଟି ହେଲାଣି, ପାଠଶାଳାର ସମସ୍ତ ଭାର ତୁମର ଉପରେ ଦେଇ ମୋତେ ଅନ୍ୟ ସ୍ଥାନକୁ ଯିବାକୁ ପଡ଼ିବ ।

ରଘୁ—( ନମ୍ରଭାବରେ ) ଆଜ୍ଞା, ଆପଣ ଦୁଇ ମାସ ହେଲା ଆମର ଏ କ୍ଷୁଦ୍ର ପାଠଶାଳାଟିକୁ ଛାଡ଼ିଦେଇ ବଡ଼ ପାଠଶାଳା ଭିତରକୁ ଗଲେଣି । ମୋର କ୍ଷୁଦ୍ର ବୁଦ୍ଧିର ସାହାଯ୍ୟରେ—

ଶିବ—ତୁମର କ୍ଷୁଦ୍ର ବୁଦ୍ଧି କାହିଁକି ହେବ ରଘୁବାବୁ ! ତୁମେ ଯେ ବିଶାଳ ବୁଦ୍ଧିସମ୍ପନ୍ନ । ଇତି ମଧ୍ୟରେ ତୁମେ ଯେଉଁ ଅତିରିକ୍ତ ପଠନର ବ୍ୟବସ୍ଥା କରିଛ—

ରଘୁ—'ବିଜ୍ୟ ବିଷୟକ ପାଠ୍ୟ' ବୋଲି ରଖିଦେଇଛି । ଆପଣ ଜାଣନ୍ତି, କୋଡ଼ିଏ ବର୍ଷ ବୟସର ଛାତ୍ର ମଧ୍ୟ ତ ଆମର ଏଠି ଅଛନ୍ତି—

ଶିବ—ତୁମର କାର୍ଯ୍ୟରେ ମୁଁ ଅତି ଆନନ୍ଦିତ ହୋଇଯାଇଛି ରଘୁବାବୁ ! ଏଇ ଦୁଇ ମାସ ପୂର୍ବେ ଆମର ଏ ଜିଲ୍ଲାର ପ୍ରତ୍ୟେକ ଗାଁକୁ ଯାଇ ଆଲୋଚନା କରି ଆସିଥିଲି । ଗାଁର ଲୋକେ ରାଜ୍ୟ ରାଜନୀତି ସମ୍ବନ୍ଧରେ ସମ୍ପୂର୍ଣ୍ଣରୂପେ ଅଜ୍ଞ ଥିଲେ । ବର୍ତ୍ତମାନ ଦେଖୁଛି, ଦେଶର ଦାରିଦ୍ର୍ୟମୂର୍ତ୍ତିକି ସେମାନେ ଦେଖିପାରୁଛନ୍ତି, ପ୍ରଶ୍ନ ଉପରେ ପ୍ରଶ୍ନ ଉଠୁଛି । ଉତ୍କଳ କଣ ! ଭାରତ କଣ ! ତାପରେ ବିଶ୍ୱ—

ରଘୁ—ଆଜ୍ଞା, ଆପଣଙ୍କ ଆଦେଶ-ଆଶିଷ ଶିରୋଧାର୍ଯ୍ୟ କରି ଅଗ୍ରସର ହେଉଛି—

ଶିବ—( ଉତ୍ସାହରେ ) ଅଗ୍ରସର ତ ନୁହେଁ, କୃତକାର୍ଯ୍ୟ ହୋଇଯାଇଛ ରଘୁବାବୁ ! ମହାତ୍ମାଙ୍କ ଶୁଭ ଇଚ୍ଛାରେ ପ୍ରଣୋଦିତ ହୋଇ ଦେଶରେ ତୁମେ ଯେଉଁ ଭଷାର, ଭାବର ପ୍ରବାହ ବୁହାଇ ଦେଲଣି—

ରଘୁ—( ପଦସ୍ପର୍ଶରେ ) ଆପଣଙ୍କ ପବିତ୍ର ଆଦର୍ଶରେ ମୋର ଆତ୍ମା ଯେପରି ଅନୁପ୍ରାଣିତ ହୁଏ—

ଶିବ—( ମଥାରେ ହାତ ଦେଇ ) ତୁମେ ରଘୁଙ୍କ ଭଳି ଦିଗ୍‌ବିଜୟ କରିଯାଅ । ( ପ୍ରସ୍ଥାନ )

ବିଷ୍ଣୁ—( ପ୍ରବେଶ) ରଘୁ !

ରଘୁ—( ପଢ଼ୁ ପଢ଼ୁ ) କଣ ଆଜ୍ଞା !

ବିଷ୍ଣୁ—ଆସୁଥିଲି, ଶିବଙ୍କୁ ଦେଖି ଲୁଞ୍ଚିଗଲି । ତାଙ୍କୁ ଦେଖିଲେ ମୋର ଭୟ ହୁଏ, କେତେବେଳେ କଣ ପଚାରିଦେବେ । ସେ ଇମିତି କଥାଗୁଡ଼ାଏ ପଚାରନ୍ତି, ଯେଉଁ ବିଷୟ ଆଲୋଚନା କରିବାକୁ ସବୁ ଜ୍ଞାନର ଆବଶ୍ୟକତା ହୁଏ; ଅର୍ଥାତ୍ ଭୂଗୋଳ, ଇତିହାସ, ବିଜ୍ଞାନ; କିନ୍ତୁ ମୋର ଜ୍ଞାନର ସୀମା

କେଶବ କୋଇଲି, ଗୋପୀଭାଷା ପର୍ଯ୍ୟନ୍ତ । ଜୀବନରେ ବଡ଼ଦାଣ୍ଡି, ବଡ଼ଠାକୁର ଛଡ଼ା କିଛି ତ ଦେଖି ନାହିଁ । ଉତ୍କଳର କେଉଁ ଜିଲ୍ଲାଟି କେଉଁ ଦିଗକୁ ଅଛି ଜାଣେ ନାହିଁ—

ବନ୍ଧୁ—( ଉଠି ) ଚାଲନ୍ତୁ ଅମର ଫୁଲବଗିଚାଟିକୁ ଦେଖିଆସିବା ।
( ପ୍ରସ୍ଥାନ )

ବଷ୍ଟୁ—ମୋହର ପାଖରୁ ଶିବୁ ଅ, ଆ ଶିଖିଲା । ତାକୁ ଦେଖିଲେ ମୁଁ ଭୟରେ କୁଆଡ଼େ ଲୁଚିଯାଉଛି—

ନେପଥ୍ୟେ—ଆସନ୍ତୁ ମାଷ୍ଟ୍ରେ—!

ବଷ୍ଟୁ—ଏଣିକି ମନଦେଇ ଭୂଗୋଳ, ଇତିହାସ ଟିକିଏ ପଢ଼ିବାକୁ ହେବ । ତା ନ ହେଲେ ଏମାନଙ୍କ ସମ୍ମୁଖରେ ଠିଆହେବା ମୁସ୍କିଲ ହେବ । ( ପ୍ରସ୍ଥାନ )

ବୈଦ୍ୟନାଥ—(ପ୍ରବେଶ)

ଶିବ—( ପ୍ରବେଶ )

ବୈଦ୍ୟ—( ପ୍ରଣତ ହୋଇ ) ( ଉଠି ) ଆପଣଙ୍କ ସ୍ନେହ, ଆପଣଙ୍କ ଦୟା—

ଶିବ—( ମଥା ଛୁଇଁ ) ବସ ବୈଦ୍ୟନାଥ ! ସବୁ କୁଶଳ ତ ? ପୁଅ ଭଲ ଅଛି ?

ବୈଦ୍ୟ—ଆଜ୍ଞା, ଆମେ ନିଃସହାୟ ନିରକ୍ଷର ହୋଇ କେବଳ ଭଗବାନଙ୍କୁ ଡାକୁଥିଲୁ । ଆପଣ ଆମମାନଙ୍କୁ ରକ୍ଷାକଲେ । ତା ନ ହୋଇଥିଲେ ମେଦିନୀପୁରରେ ଆମ ଭଳି ଗରିବ ପ୍ରଜାର ଗୁହାରି କିଏ ବା ଶୁଣନ୍ତା ? ଆପଣଙ୍କ ଦୟାରୁ ବିଶ୍ୱନାଥ ମେଜେଷ୍ଟ୍ରି ଅଫିସରେ ଚୌଦ ଟଙ୍କାର ଚାକିରି ପାଇଛି । ଚାକିରି ତ ନୁହେଁ ଅଜ୍ଞା, ଅପଣ ତାକୁ ଗୌରବ-

ମୁକୁଟ ପିନ୍ଧାଇଦେଲେ । ମର୍ଯ୍ୟାଦାଟା ବଢ଼ିଗଲା ।
ଆପଣଙ୍କ ଆଦେଶଟି ଶିରୋଧାର୍ଯ୍ୟ କରି ଓଡ଼ିଆ ପତ୍ର କାଟିଏ
ମଗାଉଛୁ । ସନ୍ଧ୍ୟା ସମୟରେ ଆମର ଓଡ଼ିଆ ଛାତ୍ରମାନଙ୍କୁ
ଡାକ ଦେଇକାଟି ପଢ଼ି ଶୁଣାଉଛୁ । ଆପଣଙ୍କ କଥା ପଢ଼ି
ପଢ଼ି ପେଟକୁ କୋହ ଉଠୁଛି । ଆପଣ ଦେବତାଙ୍କ ପରି
ଆବିର୍ଭାବ ହୋଇଛନ୍ତି—

ଶିବ—ତମେ ସୌଭାଗ୍ୟ ବୈଦ୍ୟନାଥ, ତୁମ ମନରେ ଆନନ୍ଦ
ସଞ୍ଚାର କରାଇ ପାରୁଛି । ତୁମକୁ ସୁଖୀ କରିବା ସୁଯୋଗ ମତେ
ଦେଇଛ ବୈଦ୍ୟନାଥ, ସେଥିଲାଗି ତୁମ ପାଖରେ ମୁଁ କୃତ-
କୃତଜ୍ଞ—

ବୈଦ୍ୟ—ଆଜ୍ଞା ! ମୁଁ ଆସିଥିଲି ଉପକାର ଋଣଭାର କମ୍ଭାଇବି
ଦିବ ବୋଲି । ଆପଣ ଓଲଟି ସେ ହା କହିଲେଣି—

ଶିବ—( ହସି ସହଜ ଭାବରେ ) ଆଜ୍ଞା, କହିଲ ବୈଦ୍ୟନାଥ—

ବୈଦ୍ୟ—ଆସିବା ଉଦ୍ଦେଶ୍ୟ ତ ପଗ୍ଭରୁଛନ୍ତି ଆଜ୍ଞା ! ବିଶ୍ୱନାଥର
ବାହାଘର ହୋଇଗଲା । ଆପଣା ଜାତିରୁ ଝିଅଟିଏ ଦେଖି
ବିଶ୍ୱନାଥଙ୍କୁ ବିବାହ ଦେବି ବୋଲି ଭାବିଥିଲି । ମୋର ଶାଳକ
ସବୁ ବ୍ୟବସ୍ଥା କରିଥିଲେ । କାଲିକି ନବବଧୂ ଘର—

ଶିବ—( ହସି ) ( ଆମୋଦରେ ) ତାହା ହେଲେ ତ ମୋତେ
ତୁମେ ଭୋଜି ଖୁଆଇବ ବୈଦ୍ୟନାଥ !

ବୈଦ୍ୟ—( ପଦ ସ୍ପର୍ଶକରି ) ମୋର ଶାଳକ ସହମ୍ମା ସ୍ୱାଇଁ ।
ଆପଣଙ୍କର ସଭା ଅଛି ନର୍ମଳୀ ଗାଁରେ । କାର୍ଯ୍ୟ ଶେଷକରି
ବୋହୂକୁ ଦେଖି ଆଶୀର୍ବାଦ ଦେଇ ଆସିବେ । ଏ ମୋର
ଭକ୍ତ ନିବେଦନ ଆଜ୍ଞା ! କିଛି ଭାବିବେ ନାହିଁ—
ଆପଣଙ୍କ ହୃଦୟର ଡାକ ଆମମାନଙ୍କୁ ଆପଣଙ୍କର—

ଶିବ—( ହସି ) ଅତ ପାଖକୁ ଆଣିଦେଉଛୁ !

ବୈଦ୍ୟ—ହଁ ଆଜ୍ଞା ! ଆପଣଙ୍କର ବହୁମୂଲ୍ୟ ସମୟ ଆଜ୍ଞା—
( ହାତଯୋଡ଼ ପ୍ରସ୍ଥାନ )

ନର ପ୍ରଧାନ—( ପ୍ରବେଶ ) ( ସାଷ୍ଟାଙ୍ଗ ପ୍ରଣାମ )

ଶିବ—ଉଠ ନର ଭାଇ ! ତୁମେ ମୋର ପ୍ରିୟ ଭାଇ । ତୁମର ଆସନ ମୋର ପାର୍ଶ୍ୱରେ, ପଦତଳେ ନୁହେ । କୁଆଡ଼େ ଚାଲିଆସିଲ ? ତୁମ ପୁଅ ମାଳମଣି ତ ବେଶ୍ ଭଲ ଅଛି ?

ନର—ହଁ ଅବଧାନେ, ସେଇ କଥା କହିବ ବୋଲି ଆସିଥିଲି । କଣ କରୁଥିଲି ମାଳ ! ଚାଷ ପଶା ଖେଳି ପାନ ବଡ଼ି ଖାଇ ! ମାଳକୁ ମୁଁ ପଠାଉ ନ ଥିଲି । ତା ମା ତାକୁ ପଠାଇଦେଲା ଆପଣଙ୍କର ପଦଧୂଳି ତଳକୁ । ଏବେ ସେ ତା ମାଆକୁ ଭାଗବତ ପଢ଼ାଉଛି ।

ଶିବ—( ଭାବାବେଗରେ ) ଆଜିର ପ୍ରଭାତଟି ବଡ଼ ଆନନ୍ଦମୟ । ମନେ ହେଉଛି, ବିଶ୍ୱଜଗତ୍ ଯେପରି ଆନନ୍ଦ-ଆଲୋକରେ ଉଦ୍ଭାସିତ ହୋଇଉଠିଛି । ଉଷାଦେବୀ ବିଶ୍ୱର ସମସ୍ତ ଶୁଭ ସଂବାଦ ନେଇ ଯେପରି ପୂର୍ବ ପ୍ରାନ୍ତରୁ ଧୀରେ ଧୀରେ ଆଗମନ କରୁଛନ୍ତି । ନର ଭାଇ ! ତୁମର ପୂର୍ବ ପୁଣ୍ୟର ପ୍ରଭାବରେ ମାଳ ମନୁଷ୍ୟ ଶ୍ରେଣୀରେ ଗଣ୍ୟ ହୋଇ-ଯାଇଛି ।

ନର—କିନ୍ତୁ ଅବଧାନେ, ଗୋଟିଏ କଥା । ତା ମାଆ ଭାରି କାନ୍ଦୁଛି । ମାଳ କହିଦେଲା—( ଆବେଗରେ କଣ୍ଠରୋଧ )

ଶିବ—କଣ କହିଦେଲା ନର ଭାଇ ?

ନର—ଅବଧାନଙ୍କୁ ସରକାର୍ ଜେଲକୁ ନେଇଯିବେ ବୋଲି—

ଶିବ—( ହସି ) ଓଃ, ଏଇଥିଲାଗି ମାଲମା କାନ୍ଦୁଛୁ ! ଆହା ମୋ ଭଉଣୀ ମୋ ନିମନ୍ତେ ବ୍ୟଥିତା ହୋଇ କାନ୍ଦୁଛି ! ( ସହଜ ଭାବରେ ) ମାଲମାଆକୁ କହିଦେବ ନରି ଭାଇ, ତାର ସେ ପବିତ୍ର ଅଶ୍ରୁରେ ମୋର ସବୁ ଅବସାଦ ଧୋଇ ହୋଇ-ଯିବ ।

ନରି—( ଆବେଗରେ ) ତୁମେ ଏ ଭୂମିରୁ ପାଦ ଘୁଞ୍ଚାଇଲେ ଏ ଭୂମି ଯେ ମରୁ ବାଲି ହୋଇଯିବ ଅବଧାନେ !

ଶିବ—ଆଜି ସକାଳ ବେଳାରେ ତୁମେ କି ଅମୃତ ଧରିଆସିଲ ନରି ଭାଇ ! ମୋର ବିଚ୍ଛେଦରେ ତୁମେ ଯେଉଁ ଦୁଃଖଟିକକ ଅନୁଭବ କରିଛ, ସେତିକରେ ମୁଁ ସବୁ ପାଇଯାଇଛି । ମୋର ଜୀବନ, ମୋର ଜନ୍ମ ଧନ୍ୟ ହୋଇଯାଇଛି ।

କଇବଲ—( ପ୍ରବେଶ ) ( ଆବେଗରେ ପଦତଳେ ପଡ଼ିଯାଇ ) ଆଜ୍ଞା ! ବନୁବୋଉ ମୋତେ ପଠାଇଛି । ଆପଣ ଜେଲକୁ ଚାଲି ଯାଉଛନ୍ତି ବୋଲି ସେ କେଉଁଠୁ ଶୁଣିଲା । ଆପଣ ଆମମାନଙ୍କୁ ମରଣ-ମୁହଁରୁ ରକ୍ଷା କରିଛନ୍ତି, ବଡ଼ି ପାଣିରେ ଭାସିଯିବାଠୁ ତୋଳିଧରି ରଖିଛନ୍ତି, ରୋଗରେ ସଡ଼ି ମରିବା ସମୟରେ ଆହା ବାଣୀଟି ଶୁଣାଇ ଶୁଖିଲା ଓଠରେ ପାଣି ଟିକିଏ ଢାଳି ଦେଇଛନ୍ତି ।

ଶିବ—( ହସି ) ତୁମମାନଙ୍କର କଲ୍ୟାଣ କାମନା କରିବାଦ୍ୱାରା ଯଦି ମୋତେ ବନ୍ଦୀତ୍ୱ ବରଣ କରିବାକୁ ପଡ଼େ, ତେବେ ତାହା ତ ଆମ ଜୀବନର, ଆମ ଜାତିର ଗୌରବ କଇବଲ !

କଇ—ନା ! ନା ! ସେ କଥା  କଦାଚ ହେବ ନାହିଁ ମୋର ଏ ବାହୁ ସଞ୍ଚାଳନ  ହେଉଥିବା  ଯାଏ, ମୋର  ଏ ଦେହରେ  ରକ୍ତ-ସ୍ରୋତ ପ୍ରବାହିତ  ହେଉଥିବା ଯାଏ—

ନରି— କଇବଲ  ଭାଇ ! କହ,   ଆଉ  ଥରେ କହ   ।  କହ ଆଉଥରେ ଏ ଦେହରେ ବିନ୍ଦୁଏ  ରକ୍ତ ଥିବା ଯାଏ—

ଶିବ—( ହସି )  ( ଦୁହିଁଙ୍କ ହାତ  ଧରି ବସାଇଦେଇ )  କଣ କରିବ ଭାଇ !  ସରକାରଙ୍କ  ସହିତ  ବାହୁଯୁଦ୍ଧ  କରିବ  ? ଆମର ଏ  ସମରର  ସେନାପତି  ଯେ  ବାହୁଯୁଦ୍ଧ କରିବାକୁ ନିଷେଧ କରିଛନ୍ତି ! ଆମେମାନେ  ସମସ୍ତେ ତାଙ୍କର ଆଜ୍ଞାବହ ଭୃତ୍ୟ ମାତ୍ର  । ଆମର ସେନାପତି ଦୁଇ ହାତରେ ଧରିଛନ୍ତି ସତ୍ୟ ଅହିଂସାର ଦୁଇ  ମହା ଅସ୍ତ୍ର—

କଇ—ସତ୍ୟ ଅହିଂସାର ଅର୍ଥ ଆମେ  ଆହୁରି  ବୁଝିପାରୁ  ନାହୁଁ ଆଜ୍ଞା ! ଆମର ତ୍ରାଣକର୍ତ୍ତା, ଆମର ପ୍ରାଣଦାତା ଆପଣ । ଆମର ଘରର ଦେବତା, ପିତାମାତା  ସବୁ । ଆମ ଭିତରୁ  ଆପଣଙ୍କୁ ଯେ ଛଡ଼ାଇନେବାକୁ  ଆସିବ,  (ଦାନ୍ତ  କଡ଼୍‌ମଡ଼୍  କରି ) ତାକୁ ଏ ବାହୁରେ ଚିପି ଧରି ହାଡ଼ ମାଂସ ସବୁ—

ନରି—ହଁ ଭାଇ, ସେଇ କଥା । ସେହି କଥା ହିଁ କରିବା ।

ଶିବ—(ସହଜ ଭାବରେ) ଛି, ଭାଇ !  ହିଂସା ବୃତ୍ତି ଆମର କାର୍ଯ୍ୟ ନୁହେ ।  ଆମେ  ଯଦି  ଏଇ  ଭାବରେ  ଭାବନା  କରିବା, ନିମିଷକେ  ଆମର  ଅସ୍ତିତ୍ୱ ଲୋପ ହୋଇଯିବ  ।  ମହାମାନବ ଆମମାନଙ୍କୁ ଯେଉଁ ଆଲୋକମୟ ପଥଟି ଦେଖାଇ  ଦେଇଛନ୍ତି, ଯେଉଁ  ସତ୍ୟମନ୍ତ୍ରଟି  ଶୁଣାଇଛନ୍ତି, ଆମେମାନେ  ସେଇ  ମନ୍ତ୍ର ଜପ  କରି  ସେଇ  ମାର୍ଗରେ  ଗତି  କରିଯିବା  ।  ତୁମେ ଉତ୍ତେଜିତ ହୋଇଯାଇଛ  କଇବଲ  ଭାଇ ! ଧାନକଟା ବନ୍ଦ

କର ଏଣେ ଗୃହଆସିଛ । ନର ଭାଇ ! ତୁମେ କଇବଲ ଭାଇକୁ ବୁଝେଇ କହି ଧାନକଟା କାର୍ଯ୍ୟରେ ଲଗାଇଦଅ ତ । ଯାଅ ଭାଇ !

( ଉଭୟେ ନୀରବରେ ପ୍ରସ୍ଥାନ )

ବନ୍ଧୁ—(ପ୍ରବେଶ) (ଆବେଗରେ) ଶିବ ! (ଖାତା ଦେଖାଇ) କଣ ଲେଖିଛ ତୁମେ ! ଜନ୍ମତିଥିରେ ଆତ୍ମପ୍ରକାଶ କରିଛ ଶିବ !

ଶିବ—କଣ ଲେଖିଛି କହିଁ ତ ମନେ ନାହିଁ—

ବନ୍ଧୁ—ବନ୍ଦୀର ବନ୍ଦନା । ବନ୍ଦୀଗୃହକୁ ଯିବା ପୂର୍ବରୁ ଆପଣାକୁ ବନ୍ଦୀ ବୋଲି ଅନୁଭବ କରି ସାରିଲଣି ଶିବ ! ଯ୍ୱାକୁ ହିଁ କହନ୍ତି ଦୃଢ଼ପ୍ରତ୍ୟୟ ।

ଶିବ—ଆପଣଙ୍କର ଶୁଭ ଇଚ୍ଛାରେ ହିଁ—

ବନ୍ଧୁ—(ହସି) ମୋର ଶୁଭେଚ୍ଛା ! କେଉଁ ଅତୀତ କାଳରେ ମୁଁ ତୁମର ଗୁରୁ ହୋଇଥିଲି । ଆଜି ତୁମେ ମୋର ଗୁରୁ ହୋଇ ମନ୍ତ୍ରଦାନ କର ଶିବ ! ଶେଷ ଜୀବନରେ ଯଦି କିଛି କରିପାରେ—

ଶିବ—ଆପଣଙ୍କ କର୍ମଶକ୍ତି ସାହାଯ୍ୟରେ ହିଁ ମୁଁ ଆଜି ସମରସିନ୍ଧୁ ଭିତରକୁ ଝାମ୍ପ ଦେବାକୁ ବସିଛି ।

ବନ୍ଧୁ—( ହସି ) ତୁମେ ଯେ ମାତୃକୋଳ-କମଣ୍ଡଳରୁ ବାହାରି ସାଗରଜଳରେ ସନ୍ତରଣ କଲଣି—

ଶିବ—(ହସି) ବେଦଚୋର ଶଙ୍ଖାସୁରକୁ ବିତାଡ଼ନ କରିବା ନିମନ୍ତେ—

ବନ୍ଧୁ—ଆମର ସଂସ୍କୃତିବିଧ୍ୱଂସୀ ବିଦେଶୀ ଶାସକକୁ ବିତାଡ଼ନ କରିବା ନିମନ୍ତେ ତୁମେ ମତ୍ସ୍ୟ ଅବତାର ହୋଇ—

ଶିବ—( ଗମ୍ଭୀର ହୋଇ ) ଅଯୋଗ୍ୟଙ୍କୁ ଏତେ ବଡ଼ ଉପାଧି ଦିଅନ୍ତୁ ନାହିଁ ଆଜ୍ଞା !

ବସ୍ତୁ—ସମୟେ ସମୟେ ଆଖି ଆଗରେ ଗୋଟାଏ ବିଭୀଷିକା ଦେଖା ଦେଉଛି । ପର ଦୁଃଖରେ କାତର ହୋଇ—

ଶିବ—ଆପଣ କହୁଛନ୍ତି ଅତି କାତର ହେବା ଉଚିତ ନୁହେଁ । କିନ୍ତୁ ଅତି କାତର ନ ହେଲେ ଯେ କାର୍ଯ୍ୟ ସାଧିତ ହେବ ନାହିଁ ! ଦେଶବାସୀଙ୍କର ସମସ୍ତ କାତରଧ୍ୱନି ଜଣଙ୍କର କଣ୍ଠରେ ଏକତ୍ର ହୋଇ ଧ୍ୱନିତ ହେବାକୁ ହିଁ ହେବ ।

ବସ୍ତୁ—ଧୂର୍ଜଟିର ମତ ଯେ ଧୀରେ ସୁସ୍ଥେ ଚିନ୍ତା କର—

ଶିବ—ଆପଣଙ୍କର ତ ମନେ ଅଛି, ଆମର ଏଇ ଆଖ ପାଖ ଗାଁରୁ ଆମେ ସାତ ଜଣ ପଢ଼ିବାକୁ ବାହାରିଥିଲୁ, ଆପଣ ଆମମାନଙ୍କୁ ନାମ ଦେଇଥିଲେ ସପ୍ତର୍ଷି ମଣ୍ଡଳ ବୋଲି—

ବସ୍ତୁ—ସଂସାରଯାତ୍ରା ନିର୍ବାହ କରିବା ସଙ୍ଗେ ସଙ୍ଗେ ସୁବିଧା ଅନୁଯାୟୀ ଲୋକ ସେବା କର—

ଶିବ—ମୋର ସୁବିଧା ଅନୁଯାୟୀ ଦେଶ-ଦେବତା ପ୍ରତି ଦୟା ପ୍ରଦର୍ଶନ କରିବା ପ୍ରେରଣା ମୁଁ ପାଉ ନାହିଁ ମାଷ୍ଟ୍ରେ ! ଦିଗନ୍ତ ପ୍ରକମ୍ପିତ କରି ପ୍ରାଣର ପ୍ରଭୁ ଆହ୍ୱାନ କରୁଛନ୍ତି ଅହରହ । ପିତା ସ୍ୱର୍ଗଧାମରେ ରହି ଗୁରୁଗମ୍ଭୀର କଣ୍ଠରେ ନିର୍ଦ୍ଦେଶ ଦେଉଛନ୍ତି ଭାରତ ତପୋବନକୁ ମୁକ୍ତ କରିବା ନିମନ୍ତେ । ବୋଉ ଆଜି ଏ ଦେଶର ଜନନୀ ରୂପେ ଠିଆ ହୋଇ ଆଶୀର୍ବାଦ ଦେଉଛି ଦେଶହିତବ୍ରତ ସାଧନ କରିବା ନିମନ୍ତେ । ଗାୟତ୍ରୀ ଧ୍ୟାନରତା ହୋଇ ମୁକ୍ତିମନ୍ତ୍ର ପଢ଼ୁଛି ଅହରହ—

ରଘୁମଣି—(ପ୍ରବେଶ) ବଡ଼ ବିପଦ ! ଓଃ ଏତେଡ଼ ବଡ଼ ବିପଦ ଏତେ ଶୀଘ୍ର ଘଟିବ ବୋଲି—

ଶିବ—(ଆବେଗରେ) ବିପଦ ! (ହାତ ଧରି) କି ବିପଦ ରଘୁମଣି ? ନିର୍ମଳୀ ଟାଁର ଚଇତନ ଦାସକୁ ବଡ଼ ଜ୍ୱର ହୋଇଥିଲା—

ରଘୁ—ଆମେ ଆଉ କାହାକୁ ପଚ୍ଛରେ କର୍ମକ୍ଷେତ୍ରକୁ ଅଗ୍ରସର ହେବୁ ?

ଶିବ—ତୁମେ ଏପରି ବ୍ୟଥିତ କାହିଁକି ହେଉଛ ରଘୁ ! କହ—

ରଘୁ—ଆପଣଙ୍କର ବିଚ୍ଛେଦ ଆମେମାନେ ସହ୍ୟ କରିବୁ କିପରି ?

ଶିବ—ରଘୁ ! ମୋର ଧାରଣା ହେଉଛି, ତୁମେ ନିଶ୍ଚିତ ସମ୍ବାଦ ଶୁଣି ଆସିଛ—

ରଘୁ—ଆମର କର୍ମରାଜ୍ୟର ରାଜାଙ୍କୁ ହରାଇ—

ଶିବ—(ହାତ ଧରି) ରଘୁ ! ମୁଁ ଜାଣେ, ତୁମେ ଜଣେ ନିଷ୍ଠାପର କର୍ମୀ । ମୁଁ ଯଦି ଦେବମନ୍ଦିରରେ ବନ୍ଦୀ ହୁଏ, ତୁମେ ହିଁ ମୋର ଆସନଟି ଗ୍ରହଣ କରିବ ରଘୁ ! ତୁମର ବିଶ୍ୱାସ ତୁମକୁ ବଳଶାଳୀ କରିବ, କୌଣସି କର୍ମ ଅପୂର୍ଣ୍ଣ ହୋଇ ରହିବ ନାହିଁ ।

ରଘୁ—କର୍ମରାଜ୍ୟର ରୁଦ୍ରରୂପ ଦେଖିଲେ ଯେ ଭୟରେ ମୋର ସର୍ବାଙ୍ଗ କମ୍ପିଉଠୁଛି । ମୁଁ କେବଳ ଆପଣଙ୍କର ଗୁପ୍ତାଗୁଲ୍ୟ ଆପଣଙ୍କ ପଛରେ ଗଢ଼ କରୁଥିଲି—

ଶିବ—(ଆବେଗରେ) ଆତ୍ମଶକ୍ତିକୁ ଆହ୍ୱାନ କର ରଘୁ, ଆହ୍ୱାନ କର—

ରଘୁ—(ଆତଙ୍କରେ) ରାସ୍ତାରେ ଦେଖିଲି ପୋଲିସ ଅଫିସର, ପୋଲିସ ପ୍ରହରୀ—

ଶିବ—(ହସି) ପୋଲିସ ସାହେବ ଆସିଛନ୍ତି—ଦେଶ ପକ୍ଷେ ଏ ତ ଗୋଟିଏ ଶୁଭ ସୂଚନା ରଘୁମଣି ! ଆଜି ନୂତନତାର ଆବେଗରେ ତୁମେ ସମସ୍ତେ ଉଦ୍‌ବେଗ ଉଚ୍ଛନ୍ନ ହୋଇପଡ଼ୁଛ । ଆଜିର ନୂତନ ସମ୍ବାଦ କାଲିକି ପୁରୁଣା ହୋଇଯିବ । ସେମାନେ ବାରମ୍ବାର ଆସି ମୋ ପଛେ ପଛେ ମୋର ପ୍ରିୟ ବ୍ୟକ୍ତିବୃନ୍ଦଙ୍କୁ ନେଇ ବନ୍ଦୀଶାଳାରେ ରଖିଦେବେ । ଭାରତର କାରାଗାର ପରିପୂର୍ଣ୍ଣ ହୋଇଯିବ ।

ବିଷ୍ଣୁ—(ଆବେଗରେ କାନ୍ଦି) ଶିବୁ ! ଶିବୁ ! ମୁଁ ଯେ ଆଉ ଧୈର୍ଯ୍ୟ ଧାରଣ କରିପାରୁ ନାହିଁ । ମୁଁ ତୁମକୁ ନେଇ ତୁମ ବୋଉଙ୍କ ପାଖରେ ଛାଡ଼ିଦେବି ।

(ହାତ ଧରି ସମସ୍ତଙ୍କ ପ୍ରସ୍ଥାନ)

—○—

# ଦ୍ୱିତୀୟ ଅଙ୍କ

## ଦ୍ୱିତୀୟ ଦୃଶ୍ୟ

ସ୍ଥାନ—ଶିବସୁନ୍ଦରଙ୍କ ବାସଗୃହର ବାହାର ବାରଣ୍ଡା

( ରାସ୍ତାର ବରପାଖ ଦିଗରୁ ସଦାନନ୍ଦ ଓ ଚକ୍ରପାଣି ପ୍ରବେଶ )

ଚକ୍ର—ସଦେଇ, ତୋର ପାଖକୁ ଯାଉଥିଲି । ଆଜି ମାର୍ଗଶିର ମାସର ଗୁରୁବାର, ତୋ ଖୁଡ଼ୀ ଲକ୍ଷ୍ମୀପୂଜା କରିବ । କହିଲି, ଖାଇବା ଡେରି ହେବ । (ଶିବଙ୍କ ବାରଣ୍ଡା ତଳ ପାହାଚ ପାଖକୁ

ଯାଇ) ( ପାନ ନେବା ଚେଷ୍ଟା କରି ) ବସ ମ ସଦେଇ ! ମୁହଁଟାକୁ ଏପରି ମଳିନ କାହିଁକି କରିଛୁ ? ( ପାନଡ଼ବା ଖୋଜିବା ) ( ହାତ ଧରି ବସାଇଦେଇ ବସି )

ସଦା—( ଅତ୍ୟନ୍ତ ବିରକ୍ତିରେ ) ମୁଁ ଆଜିଠୁ ପାନ ଛାଡ଼ିଦେଲି, ନିଅ ପାନଡ଼ବା—

ଚନ୍ଦ—(ପାନ ଖିଲେ କଳରେ ପୂରେଇ ) ( ଗୋବାଇ ) ରାଗୁଛୁ କାହିଁକି ସଦେଇ, ଶୁଣ—

ସଦା—(ଘୂଞ୍ଚିଯାଇ) ପାନଛେପ ପଡ଼ୁଛି, ଦେହ ଗୋଟାକଯାକ ଛେପ ବୋଳି ହୋଇଗଲା । ( ଗାମୁଛାରେ ପୋଛି )

ଚନ୍ଦ—( ପାଖକୁ ଘୂଞ୍ଚିଆସି ) ଏଠିକି ସକାଳ ଖବରଟା ବଡ଼ ସୁନ୍ଦର ପଡ଼ୁଛି ରେ ସଦେଇ ! ( ମୁହଁକୁ ଚାହିଁ ) ଶୁଣ ମ—

ସଦା—ଶୁଣୁ ନାହିଁ ଆଉ କଣ କାନରେ ତୁଳା ଦେଇ ବସିଛି !

ଚନ୍ଦ—ରାଗୁଛୁ କାହିଁକି ମ, ଶୁଣ । ( ମୁହଁ ପାଖକୁ ଆସି ) ହଇରେ ସଦେଇ ! ଏଇ ଯେଉଁ ବଡ଼ି ମରୁଡ଼ିରେ ଗାଁ ଗାଁ ବୁଲି ଦସ୍ୟୁ ଆଚରଣ କରୁଥିଲି, ଏଥର କାରଣଟା ମୁଁ ଏବେ ବୁଝିଲି ରେ !

ସଦା—ବୁଝିଲ ନିଆଁ ପାଉଁଶ ।

ଚନ୍ଦ—ନିଆଁ ପାଉଁଶ କାହିଁକି ବୁଝିବି ରେ ସଦେଇ, ଅସଲ କଥାଟି ବୁଝିଛି । ବିଷୟର ସାର ମର୍ମ—

ସଦା—( ମୁଖଭଙ୍ଗୀ କରି ) କଥାର ମର୍ମ ! ଏକାଥରକେ ବୁଝି ପାଇଥିବ ତ ?

ଚନ୍ଦ—ନାରଣୀର ମାମୁଁ ଆସିଥିଲା ଯେ କଣ କହୁଥିଲା ଜାଣିଛୁ ?

ସଦା—ଶୁଣ ହେ ! ନାରଣୀର ମାମୁଁ କେବେ କାହାଘରେ କାହାକୁ କଣ କହୁଥିଲା ମୁଁ କପରି ଜାଣିବି ?

ଚନ୍ଦ—ଆଜିକାଲି ସଭା କରି ସରକାରକୁ ନିନ୍ଦା କଲେ ସବୁ ବଡ଼ ଲୋକ ହୋଇ ଯାଉଛନ୍ତି ରେ ସଦେଇ !

ସଦା—(ବିରକ୍ତରେ) ତୁମ କଥାର ଅର୍ଥ ତ ମୁଁ ବୁଝିପାରୁନି । ତୁମେ କଣ ବୁଝିଛ କେଜାଣି ?

ଚନ୍ଦ—ଆହା ! ତୁ ତ ଆଜ ବେଳକୁ ବେଳ ବିରକ୍ତ ହେଉଛୁ । ଶୁଣ, ଏଥର ସ୍ପଷ୍ଟ କରି କହିଦେଉଛି, ଏଇ ଆମର ଶିବ ମିଶ୍ର ମ, ଜେଲକୁ ଯିବାକୁ ସବୁ ଉଦ୍ୟମ ଆୟୋଜନ କରୁଛି ବୋଲି ଶୁଣିଲି ଯେ ! ହଇ ରେ ସଦେଇ, ଘରର ସୁଖ ଛାଡ଼ି ଜେଲକୁ କାହିଁକି ଯିବ ରେ ?

ସଦା—ତାଙ୍କୁ ପଚାରୁନୁ କାହିଁ ?

ଚନ୍ଦ—( ନସ୍ୟ ଖୋଜି ) ଭଲ ନସ୍ୟଟି ତିଆରି କରନ୍ତି ରେ ସଦେଇ !

ସଦା—(ଘୃଣାରେ) ନାସଦାନି ଆଣି ନାହିଁ ।

ଚନ୍ଦ—ଆଣିନୁ ଯଦି ଆଣିନୁ । ପାନ ଅଛି ଚଳିଯିବ । ଯେ—ସେଇ କଥା ମ ସଦେଇ ! ମାଗୁଣି ଭିକାରୀଟାକୁ ତିନି ଥର ତିନି ପେଟ ଖୁଆଉଛୁ ରେ ! ଆଉ ସେ ବୁଢ଼ା ବଷ୍ଟୁ ତିଆରୀ ମ ! ଦିନରେ ମହଣେ ମୁଢ଼ି ଖାଇଦେବ । ହଇ ରେ ସଦେଇ ! ଏସବୁ ଚଳାଉଛୁ କିପରି ?

ସଦା—ହଁ ହେ, ତୁମକୁ ସେଇ ଚିନ୍ତା ଲାଗିଛି । କିଏ କାହା ଘରେ କଣ ଖାଉଛି, କାହାକୁ ଖୁଆଉଛି, ସେଠାରେ ତୁମର ମସ୍ତିଷ୍କଟି କାହିଁକି ଘୂର୍ଣ୍ଣାୟମାନ ହେଉଛି ?

ଚନ୍ଦ—ନାରଣୀ ମାମୁଁ କଣ କହୁଥିଲା କି ଯେଉଁ ରଜା ଆମର ଏ ଦେଶ ଚଳାଉଛି, ତା ନାଁ! ବ୍ରିଟିଶ୍‌ସିଂହ । ତିନି ଲୋକର ନାଟ, ତା ରାଜ୍ୟରେ କେବେ ସୂର୍ଯ୍ୟ ଅସ୍ତ ହେଉ ନାହାନ୍ତି ।

ଯାହାର ପଦକ୍ଷେପରେ ପୃଥିବୀ ଥରଥର କମ୍ପୁଛି, ସେଭଳି ରଜାଙ୍କ ସହିତ ତୁଳନା କଲେ ଆମେ ସବୁ କ୍ଷୁଦ୍ର ଜୀବ ନା ଆଉ କଣ ? ଏଭଳି ଯେଉଁ ରାଜା ତା ବିରୁଦ୍ଧରେ ମୁହଁ ଫିଟାଇବାକୁ କାହାର ସାହସ, ଶକ୍ତି ଅଛି କହିଲୁ ସଦେଇ ?

ସଦା—ଯାହାର ସାହସ ଅଛି, ଶକ୍ତି ଅଛି, ସେ ତ କହୁଛି । ସେଥିରେ ତୁମର କାହିଁକି ଚିନ୍ତା ପଡ଼ୁଛି ? ଆମେ ସମସ୍ତେ କ୍ଷୁଦ୍ର ଜୀବ ବୋଲି କହିଲ ଯେ, ତୁମେ ନିଜେ କ୍ଷୁଦ୍ର ବୋଲି ସମସ୍ତେ କାହିଁକି କ୍ଷୁଦ୍ର ହେବେ ହେ !

ଚନ୍ଦ—ହେଲେ ମଧ୍ୟ ରାଜା ତ, ରାଜାବିରୁଦ୍ଧ ପ୍ରଚାର କରିବା ଅନ୍ୟାୟ ।

ସଦା—ଅନ୍ୟାୟ ! କି ନ୍ୟାୟବାନ୍ ବ୍ୟକ୍ତିଟିଏ ହେ ତୁମେ ! ନ୍ୟାୟ, ଧର୍ମ, ବ୍ରିଟିଶସିଂହ ଇତ୍ୟାଦି ବଡ଼ ବଡ଼ କଥା କହିଯାଉଛ ଯେ, ବ୍ରିଟିଶ୍ ସରକାର ସମ୍ବନ୍ଧରେ ତୁମେ କଣ ଜାଣ ? ଦେଶର ରାଜା କିଏ, ପ୍ରଜା କିଏ, ଏ ଦେଶରେ ଧୋଇ ହେଉଛି, ମରୁଡ଼ି ହେଉଛି, କେତେ ମରୁଛନ୍ତି—

ଚନ୍ଦ—କେତେ ନ ମରି ରୋଗଶୋକରେ—

ସଦା—ମୃତ୍ୟୁଯନ୍ତ୍ରଣା ଭୋଗୁଛନ୍ତି—

ଚନ୍ଦ—ସେ ବିଷୟ ଚିନ୍ତା କରିବାକୁ ମୋର ଅବସର କାହିଁ ?

ସଦା—ଜନ୍ମ ହେବା ସମୟରେ ଆହାର ଜୀର୍ଣ୍ଣ କରିବା ଯନ୍ତ୍ର ଗୋଟିଏ ବିଧାତାଙ୍କଠୁ ମାଗି ଆଣିଛ—

ଚନ୍ଦ—ତାହାର ଚିନ୍ତାରେ ଅହରହ ବ୍ୟସ୍ତ ହେବାକୁ ପଡ଼ୁଛି ରେ ସଦେଇ !

ସଦା—ସକାଳ ହେଲା, ସୂର୍ଯ୍ୟ ଉଦୟ ହେଲେ—

ଚନ୍ଦ—(ହସି) ମୋର ଭଜନ ଆରମ୍ଭ ହେଉଛି କଣ ଖାଇବା, କଣ ଖାଇବା ! ଖାଇବା ପରେ—

ସଦା—ସେଗୁଡ଼ିକ ହଜମ କରିବାକୁ କେତେ ଉଦ୍ୟମ, ଆୟୋଜନ, ପାଚକ, ରେଚକ ଚୂର୍ଣ୍ଣ—

ଚନ୍ଦ—ଆଉ ମୋର ସମୟ କାହିଁ ? (ପିଠି ଚାପୁଡ଼େଇ) ସଦେଇ, ତୋର ଏ ବୁଝିବା ଶକ୍ତିର ପ୍ରଶଂସା ନ କରି ରହି ପାରୁ ନାହିଁ । (ଦୀର୍ଘଶ୍ୱାସ) ହଁ ମ ଗୁଡ଼, ଆମ ନିଜ କଥାରୁ କଣ ପାଇବା ? ହଇରେ, ସତ ରେ କଇଦା ହୋଇଯିବ ବୋଲି ଗାଁରେ ସବୁ କଥା ହେଉଛନ୍ତି ଯେ—

ସଦା—ଯାଅ ହେ ! ମୋ ଦେହ ଗୋଟାପାକ ଛେପ ବୋଲି ଥରକୁ ଥର ସେଇ କଥା ପଚାରୁଛ ଯେ ମୋ ମନ ଆଜି ଭଲ ନାହିଁ, ବୁଝିଲ ? ପିଲାଦିନେ ଏକା ସାଙ୍ଗରେ ପଢ଼ିଥିଲୁ । ମନଟା ମୋର ଗୋଲେଇଯାଉଛି ଆକୁଳ ବ୍ୟାକୁଳ ହେଉଛି କଣ ହେଲେ କରନ୍ତି ବୋଲି । ଏ ଦେହ ଶୀଘ୍ର କପରି ମାଟିରେ ମିଶିଯାଆନ୍ତା କି, ପୁଣି ଶିବସୁନ୍ଦର ପରି ମନୁଷ୍ୟ ଦେହ ଧରି ଜନ୍ମ ହୁଅନ୍ତି—

ଚନ୍ଦ—(ଧରିପକେଇ) ଆରେ ଓଲି, ଅଶୁଭ କଥାଗୁଡ଼ାକ ତୁଣ୍ଡରେ ଧରନା ! ଧରନା ! ଜନ୍ମ ହେଲାଠୁ ଆମେ ଦେହଟିକୁ ସମ୍ବଳ କରି ରହିଛେ । ଆମର ଏ ଦେହ ଗଲେ ତ ସବୁ ଗଲା । ଆଉ କଣ ଆମେ ବ୍ୟାସ,ବାଲ୍ମୀକି ହୋଇଛୁ ଯେ ଆମର କଥାଗୁଡ଼ାକ ରହିବ !

ସଦା—(ବିସ୍ମୟବ୍ୟାକୁଳ ଭାବରେ) ଦେହ ଗଲେ ସବୁ ଗଲା !

ଚନ୍ଦ—(ହସି) ଆରେ ଓଃ ! ତୋ ମଥା ଖରାପ ହେଲାଣି । ଉଠ ଉଠ, (ହାତ ଧରି) ତାସ ଦ'ବାଜି ଖେଳଦେଲେ ସବୁ ଠିକ୍ ହୋଇଯିବ । କଣ ଗୁଡ଼ାଏ ଭାବୁଛୁ ? (ଟାଣି)

ସଦା—(ଅତ୍ୟନ୍ତ ଉଦାସ ଭାବରେ) ଦେହ ଗଲେ ସବୁ ଗଲା !

ଚନ୍ଦ—ଦେହ ଗଲେ ସବୁ ଯିବ ବୋଲି ଏତେ ଦାରୁଣ କଷଣ ଚାଲିଛି । ବିଷୟର ଅର୍ଥ ବୁଝି ପାରୁ ନାହିଁ ବୋଲି ମୋତେ ତୁ ମୂର୍ଖ ଶ୍ରେଣୀରେ ରଖିଦେଇଛୁ । କହିବ ମର୍ମ କଥାଟି ! (ମୁହଁ ପାଖକୁ ଯାଇ ) ଲେଖୁଛନ୍ତି, ପଢ଼ୁଛନ୍ତି, ଦେଶହିତବ୍ରତ ପାଳନ କରୁଛନ୍ତି—ଏସବୁ କେବଳ ଅମର ହୋଇ ରହିବା ଉପାୟ ।

ସଦା—(ଅତ୍ୟନ୍ତ ଚକିତ ଭାବରେ) ହଁ, ସ୍ମରଣ ହେଉଛି । କେବେ ରାଜା ରାମଚନ୍ଦ୍ର ପ୍ରଜା-ମନରଞ୍ଜନ କରିବାକୁ ପତ୍ନୀ ତ୍ୟାଗ କରିଥିଲେ । ଏବେ ମଧ୍ୟ ଦୃଷ୍ଟାନ୍ତ ସ୍ୱରୂପ ଲୋକେ ରାମରାଜ୍ୟ ବୋଲି କଥା ହେଉଛନ୍ତି । ତେବେ ଶିବସୁନ୍ଦର ଅମର ହୋଇଯିବେ । ଆଉ ମୁଁ ଖାଇ ଖାଇ—

ଚନ୍ଦ—ଓଃ, ଓଃ, ଚାଲ, ଉଠ । ଦ'ଟା ବାଜି ତାସ ଖେଳିଦେଲେ ସବୁ ଠିକ୍ ହୋଇଯିବ—

ସଦା—ନାହିଁ ଚନ୍ଦ କଟକଇ ! ମୋତେ ଆଉ ଟାଣ ନାହିଁ । ମୋ ମନ ବହୁ ଦିନ ହେଲା ବ୍ୟାକୁଳ ହେଉଛି, ତାଙ୍କର ଆଦେଶଟିକୁ ମୁକ୍ତିମନ୍ତ୍ର ବୋଲି ବିଶ୍ୱାସ କରି ଚାଲିବି ତାଙ୍କର ପଛରେ । କଣ ବୋଲି ମୁଁ ତାଙ୍କର ସ୍ତବ ଗାଇବି ? କଣ୍ଠଦେଶରେ କଥା ଅଟକି ଯାଉଛି । ମୁହଁ ଦିଶୁଛି, କଥା ଶୁଭୁଛି । ଆସ, ଆସ, ମୋତେ ଡାକନିଅ ।

ଚନ୍ଦ୍ର—( ବ୍ୟଙ୍ଗ ଭାବରେ ମୁଖଭଙ୍ଗୀ କରି ) ଲୋ ଆଉ କଣ ଲୋକଟା ଉପରେ ସେଇ ଶିବ ମିଶ୍ରର ପ୍ରଭାବ ପଡ଼ିଗଲା ! ପିଲା ପରିବାର ଭାସିଯିବେ ଆଉ କଣ ! ସଦେଇ, ତୁ ଆସିବୁ କି ନାହିଁ ? ବୁଝିଲୁ ! ସବୁ କଥାରେ ଟିକଏ ଚାଣୁଆଁ ହେବାକୁ ହେବ । ମେଡେ ଶିବ ମିଶ୍ର କେତେ ଯେ କହୁଛି— "ଆସ ଚକେଇ, ଦେଶକୁ ସ୍ୱାଧୀନ କରିବା କାର୍ଯ୍ୟରେ ସାହାଯ୍ୟ କର"—ମୁଁ କଣ ଶୁଣିଲି ?

ସଦା—( ସ୍ୱଗତୋକ୍ତି କଲା ପରି ) ହତଭାଗା ମୁଁ, ମୋତେ ପଧା ଡାକୁଥିଲେ । ହିଁ କରିଦେଇ ଆସିଲି, ସେଇ ଦିନଠୁ ଗ୍ରେର ପରି ମୁହଁ ନ ଦେଖାଇ ରହିଛି—

ଚନ୍ଦ୍ର —( ଖାଲି ପାନଡ଼ିବା ଦେଇ ) କଣ ତୁ ଆସିବୁ କି ନାହିଁ ? ତାହା ହେଲେ ମୁଁ ଯାଉଛି । ବେଳେଇ ହେଇଯିବଣି, ଭୋକ ମଧ୍ୟ ହେଲଣି । ( ପ୍ରସ୍ଥାନ )

ସଦା—କ୍ଷମା ମାଗିବି, ପାଦତଳେ ପଡ଼ିଯିବି । ପାଦରଜ ବୋଳି ହୋଇଯିବି ଏ ମଥାରେ । (ସାଷ୍ଟାଙ୍ଗ ପ୍ରଣାମ କରିବା);

ଶିବ—( ପ୍ରବେଶ ) ( ଦେଖି ଆଶ୍ଚର୍ଯ୍ୟ ଭାବରେ ଠିଆହୋଇ ରହିବା ) କିଏସେ ତୁମେ ! ଓଃ କି ଭକ୍ତି ! ( ଉଚ୍ଚରେ ) ଓଃ ସଦାନନ୍ଦ ! କାହାର ପାଦତଳେ ଜୀବନ ସମର୍ପଣ କରୁଛ ସଦାନନ୍ଦ ?

ସଦା—( କ୍ରନ୍ଦନ-ଉଚ୍ଛ୍ୱାସ ସହ ) ତୁମର ପାଦତଳେ ଜୀବନ ସମର୍ପଣ କରୁଛି । ମୋତେ ଡାକନ୍ତୁ, ଆଦେଶ କର, ମୁଁ ତୁମର ଭୃତ୍ୟ ହୋଇ ଜୀବନ ଧନ୍ୟ କରିଦେବି ।

ଶିବ—( ପିଠି ଥାପୁଡ଼େଇ ) ଆଜି ତୁମେ ବଡ଼ ଭାବାବେଶ ହୋଇ-ଯାଇଛ ସଦାନନ୍ଦ ! ସେଇ ଭାବପ୍ରବଣତାରେ ଜଣେ

ମନୁଷ୍ୟକୁ ଭକ୍ତି କରିଛ । ମୁଁ ଯେ ତୁମରି ପରି ଜଣେ ମନୁଷ୍ୟ—

ସଦା—ତୁମେ ମନୁଷ୍ୟ ନୁହ, ଦେବତା—

ଶିବ—ମୁଁ ଦେବତା ନୁହେ ସଦାନନ୍ଦ ! ଠିକ୍ ତୁମରି ପରି ଜଣେ ମନୁଷ୍ୟ । ତୁମ ପରି ଅନ୍ୟମାନେ ମୋତେ ସ୍ନେହ ଭକ୍ତି ଦେଇ ଦେବତା କରି ଦେଇଛନ୍ତି—

ସଦା—ମୋତେ ତୁମରି ଭୃତ୍ୟ ବୋଲି ଗ୍ରହଣ କର, ତୁମରି ସେବାକରି ମୋ ଜୀବନ ସାର୍ଥକ ହେଉ—

ଶିବ—ଦେଶର ଭୃତ୍ୟ ହୁଅ ସଦାନନ୍ଦ ! ଦେଶର ସେବା କରି ଜନ୍ମଜୀବନ ଚରିତାର୍ଥ କର ।

ସତ୍ୟବ୍ରତ—( ପ୍ରବେଶ ) ନମସ୍କାର ଆଜ୍ଞା !

ଶିବ—( ଚମକି ) ନମସ୍କାର ! ନମସ୍କାର ! ଆପଣ ଦୀର୍ଘଜୀବନ ଲାଭ କରନ୍ତୁ । ଅନେକ ଦିନ ପରେ ଆପଣଙ୍କ ସହିତ ସାକ୍ଷାତ ହେଲା । ଆପଣ ମୋର ପୁରୁଣା ବନ୍ଧୁ ।

ସତ୍ୟ—ମୋର ଆସିବା ଉଦ୍ଦେଶ୍ୟ ଆପଣ ଜାଣନ୍ତି ବୋଧହୁଏ ?

ଶିବ—( ହସି ) ଆପଣ ପୋଲିସ ସାହେବ ବେଶରେ ଆସିଛନ୍ତି । ଆପଣଙ୍କ ଆଗମନର ଉଦ୍ଦେଶ୍ୟ ଜାଣେ ସତ୍ୟବ୍ରତ ବାବୁ ! ଆପଣଙ୍କ ସହିତ ଏକାଠି ବସି ଆଳାପ ଆଲୋଚନା କରିବାକୁ ମୋର ଏପରି ପ୍ରବଳ ଇଚ୍ଛା ହୁଏ ଯେ ଆପଣଙ୍କ ସହିତ କଥାବାର୍ତ୍ତା କଲା ପରି ଗଳ୍ପ ଲେଖି ରଖିଛୁ । କଲେଜରେ ସଦ୍ୟ ପ୍ରବେଶ କରିଥିଲେ ଆମେ । ସେଇ ତୁମେ ଡାକଟି କଣ୍ଠରେ ରହିଛି, ଆଜ ଛଦ୍ମବେଶରେ ତୁମେ ବୋଲି ଡାକିଦେବାକୁ ଇଚ୍ଛା ହେଉଛି—

ସତ୍ୟ—ଆପଣ ଯଦି ବିଦ୍ରୂପ କରି କହୁଥିବେ—

ଶିବ—ବିଦ୍ରୂପ ! ବିଦ୍ରୂପ କରିବା ମୋର ସ୍ୱଭାବ ନୁହେଁ ସତ୍ୟବ୍ରତ ବାବୁ ! ବିଶେଷରେ ଆପଣ ଆଜି ଆମ ଗାଁର ଅତିଥି, ଆପଣ ଜଣେ ରାଜପୁରୁଷ, ମୋ ଭଳି ଜଣେ ଦୀନ ହୀନର ଦ୍ୱାରରେ ପଦଧୂଳି ପକାଇଅଛନ୍ତି—

ସତ୍ୟ—ଆପଣଙ୍କର ବାକ୍‌ଶକ୍ତି ଅଛି, ଖୁବ୍ ସୁନ୍ଦର କହିପାରନ୍ତି । କଥା ଶୁଣି ବିଚଳିତ ହେବା ବ୍ୟକ୍ତି ମୁଁ ନୁହେଁ ।

ଶିବ—( ଗମ୍ଭୀର ଭାବରେ ) ସୌଭାଗ୍ୟବତୀ ଉତ୍କଳଜନନୀ ଆପଣଙ୍କ ତୁଲ୍ୟ ଧୈର୍ଯ୍ୟଶୀଳ ସନ୍ତାନକୁ ଗର୍ଭରେ ଧାରଣ କରିଛି ।

ସତ୍ୟ—ଏଇ କଥାକହିବା ଶକ୍ତିର ସାହାଯ୍ୟରେ ଦୁଃସାଧ୍ୟ ସାଧନରେ ବାହାରିଛନ୍ତି ।

ଶିବ—ବାହାରି ତ ନାହିଁ । ବୋଧହୁଏ ଆଜି ହିଁ ମୋର ସେ ଯାତ୍ରା ଆରମ୍ଭ ହେବ—

ସତ୍ୟ—ଆପଣ ଉତ୍କଳର ପୁରପଲ୍ଲୀରେ ଅସହଯୋଗ ଆନ୍ଦୋଳନର ଯେଉଁ ପ୍ରଭାବ ବିସ୍ତାର କରିଛନ୍ତି, ଏଥିରୁ ଯେଉଁ ପ୍ରଳୟଙ୍କର ଅବସ୍ଥା ସୃଷ୍ଟି ହେବ—

ଶିବ—ଆପଣ ଭୁଲ ବୁଝିଛନ୍ତି ସତ୍ୟବ୍ରତ ବାବୁ ! ପ୍ରଭାବ ବିସ୍ତାର କରିବା ଶକ୍ତି ମୁଁ ପାଇବି କେଉଁଠୁ ? ଆପଣ ହିନ୍ଦୁ ଗୀତା ପଢ଼ିଥିଲେ । ଏ ଦେଶର ମୁନିଋଷିମାନେ ଯାହା କହିଛନ୍ତି, ଆପଣଙ୍କର ମନେଥିବ ନିଶ୍ଚୟ, "ଯଦା ଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ, ଅଭ୍ୟୁତ୍‌ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍" । ବୈଦେଶିକ ଶାସନର ଗ୍ଲାନିରେ ଦେଶର ଉଜ୍ଜ୍ୱଳ ମୁଖମଣ୍ଡଳ ମ୍ଳାନ ହୋଇଯାଇଛି । ମହାମାନବ ମହାତ୍ମା ଗାନ୍ଧି ଆବିର୍ଭାବ ହୋଇଛନ୍ତି, ଦେଶର ଅନୁକୂଳ

କଳଙ୍କରେ ସ୍ୱାଧୀନତା-ସୂର୍ଯ୍ୟରଶ୍ମି ଉଦ୍ଭାସିତ କରାଇବେ ।
ମୋର ତ ମନେହୁଏ ବୁଦ୍ଧ ହିଁ ପୁନରାଗମ କରିଅଛନ୍ତି
ଭାରତବର୍ଷକୁ ପରାଧୀନତାରୁ ମୁକ୍ତ କରିବାକୁ । ବହୁ ଯୁଗ
ପରେ ବୁଦ୍ଧଙ୍କର ସେଇ ଅହିଂସାମନ୍ତ୍ର ଉଦ୍‌ବୋଧିତ ହୋଇ-
ଉଠିଛି । ଆଜ ବିଶ୍ୱବନ୍ଦନୀୟଙ୍କ ବାଣୀ ଶୁଭୁଛି ସୁଦୂରରୁ—

ସତ୍ୟ—ଆପଣ ଯାହାସବୁ କହୁଛନ୍ତି, ଏଇ ଭାଷା ଦେଇ କାବ୍ୟ
ଲେଖିଲେ ଉତ୍କଳର ଜଣେ ଶ୍ରେଷ୍ଠ କବି ହୋଇପାରନ୍ତେ—

ଶିବ—କୈଶୋର କାଳରେ କାବ୍ୟ ଲେଖିବାକୁ ଇଚ୍ଛା ହେଉଥିଲା;
କିନ୍ତୁ ପାରିଲି ନାହିଁ । ମୋର ଦୃଷ୍ଟିପଥରେ ବିରାଜମାନ
ହେଲା ପ୍ରାଚୀନ ଯୁଗର ଆର୍ଯ୍ୟ ଋଷିମାନଙ୍କର ସାଧନକ୍ଷେତ୍ର
ତପୋବନ । ଆଜି ତ ସେ ତପୋବନ ନାହିଁ, ଆଉ
କେଉଁଠି ବସି କାବ୍ୟ ଲେଖିବି ? ଏ ଦେଶର କୁମାରୀ ଯେ
ମୋର କାବ୍ୟର ନାୟିକା ହୋଇପାରିଥାନ୍ତା, ସେ ଆଜି
ଅଶନ ବସନର ଅଭାବରେ ଅସ୍ଥିକଙ୍କାଳ ଶରୀର ଧାରଣ
କରି ସଞ୍ଚରଣ କରୁଛି ଭାରତଲକ୍ଷ୍ମୀଙ୍କର ଭଗ୍ନ, ଜୀର୍ଣ୍ଣ,
ଜଳମଗ୍ନ କୁଟୀରରେ—

ସତ୍ୟ—ଆପଣଙ୍କର ଭାରତବର୍ଷର ଅବସ୍ଥା ବ୍ରିଟିଶ ରାଜତ୍ୱ ପୂର୍ବରୁ
ଯାହା ଥିଲା, ବର୍ତ୍ତମାନ ତ ବହୁ ଗୁଣରେ ଭଲ ଅଛି ।

ଶିବ—ଭଲ ଯଦି ଥାନ୍ତା, ମହାତ୍ମା କେବେ ଏଭଳି ଆନ୍ଦୋଳନ
ଆରମ୍ଭ କରି ନ ଥାନ୍ତେ ।

ସତ୍ୟ—ମହାତ୍ମା ହୁଅନ୍ତୁ ବା ଯେ ହୁଅନ୍ତୁ, ଏସବୁ ନେତୃତ୍ୱର ମୋହ
ଛଡ଼ା ଆଉ କିଛି ନୁହେ । ଦେଶର ପିଲାଏ ସ୍କୁଲ କଲେଜ
ଛାଡ଼ି ଧାଇଁଲେଣି ଆନ୍ଦୋଳନରେ ଯୋଗ ଦେବାକୁ । ଯେତେ
ଫାଳତୁଆ, ଅକର୍ମା ଥିଲେ, ସେମାନଙ୍କୁ କର୍ମ ମିଳିଗଲା ।

ଅନେକେ କୌଣସିମତେ ବଡ଼ଲୋକ ହୋଇଯିବା ଦେଖି ଅନ୍ୟମାନେ ସେଇ ମାର୍ଗ ଅବଲମ୍ବନ କରିବାକୁ ଉତ୍ସାହ ପାଉଛନ୍ତି—

ଶିବ— (କ୍ଷୋଭରେ) ଆପଣ ମହାପୁରୁଷମାନଙ୍କୁ ଅବଜ୍ଞା କରିବାକୁ କୁଣ୍ଠିତ ହେଉ ନାହାନ୍ତି ! ଏସବୁ ବୈଦେଶିକ ପ୍ରଭାବରେ ହିଁ ହେଉଛି ସତ୍ୟବ୍ରତ ବାବୁ ! ବିଦେଶୀ ଶିକ୍ଷା ଆମମାନଙ୍କୁ ଅତି ସଂକୀର୍ଣ୍ଣମନା, ସ୍ୱାର୍ଥପର କରିଦେଇଛି । ଆମେ ଶିକ୍ଷା ପାଇଛେ ଆମର ଏଇ ଶରୀରଟିକୁ ସୁଖସ୍ୱଚ୍ଛନ୍ଦରେ ପୋଷଣ କରି ବ୍ରିଟିଶ୍ ସରକାରଙ୍କ ଚତୁର୍ଦ୍ଦଶ ପୁରୁଷର ଜୟଗାନ କରିବାକୁ । ଆମେ ଭୁଲିଯାଇଛୁ ଆମର ପିତୃପିତାମହଙ୍କୁ, ଆମେ ଭୁଲିଯାଇଛୁ ଏଇ ଭାରତଭୂମିର ବେଦବେଦାନ୍ତ-ରଚୟିତାମାନଙ୍କୁ, ଆମେ ଭୁଲିଯାଇଛୁ ଆମର ବ୍ୟାସ, ବାଲ୍ମୀକି, ବୁଦ୍ଧଙ୍କୁ । ଆମେ ଦେଖି ପାରୁ ନାହୁଁ ଧର୍ମର ମହାନ୍ ମାର୍ଗ । ଆମର ଧର୍ମର ବିଶ୍ୱବ୍ୟାପୀ ବିରାଟ ମୂର୍ତ୍ତି କଳ୍ପନା କରିବା ଶକ୍ତି ଆମ ନାହିଁ । ଦିନକୁ ଦିନ ଆମର ଦୃଷ୍ଟିଶକ୍ତି କ୍ଷୀଣ, ଜ୍ୟୋତିହୀନ ହୋଇ ଆସିଲାଣି—

ସତ୍ୟ—ଆପଣଙ୍କ ସହିତ ଧର୍ମତତ୍ତ୍ୱ ଆଲୋଚନା କରିବାକୁ ମୁଁ ଆସି ନାହିଁ । ଏଇ ଦେଖନ୍ତୁ, ( ଦେଇ ) ଆପଣଙ୍କ ନାମରେ କାରାବାସ ଆଦେଶପତ୍ର—

ଶିବ—ମୋର ଅପରାଧ ?

ସତ୍ୟ—ଆପଣ ରାଜଦ୍ରୋହାତ୍ମକ ଭାଷଣ ଦେଇଛନ୍ତି, ଆପଣଙ୍କର ବକ୍ତୃତା ସମ୍ବାଦପତ୍ରରେ ପ୍ରକାଶ ପାଇଛି । ଆପଣଙ୍କ ଉତ୍ସାହ, ଉଦ୍ୟମର ଅନୁଗାମୀ ହୋଇ ଦେଶର ଶତ ଶତ ବିଦ୍ୟାର୍ଥୀ,

ଗୃହସ୍ଥ, ବ୍ୟବସାୟୀ ରାଜଦ୍ରୋହୀ ହେବାକୁ ଶଙ୍କିତ ହେଉ ନାହାନ୍ତି ।

ଶିବ—ଆପଣ ଯାହା କହିଲେ ଯଦି ତାହା ଘଟିଥାଏ, ସେଥିରେ ମୋର କୌଣସି କୃତିତ୍ୱ ନାହିଁ ସତ୍ୟବ୍ରତ ବାବୁ !—ସେଇ ମନ୍ତ୍ରଦାତାଙ୍କ ମନ୍ତ୍ରଶକ୍ତିରେ ଯଦି କିଛି ହୋଇଥାଏ । କିନ୍ତୁ ଏତିକିରେ ତ କିଛି ହେବ ନାହିଁ । ଯେଉଁ ଦିନ ଆପଣ ଆପଣଙ୍କର ଦିବ୍ୟ ଦୃଷ୍ଟି ଦେଇ ଭାରତବର୍ଷର ବିଶ୍ୱରୂପ ଦର୍ଶନ କରିବେ, ଯେଉଁଦିନ ଆପଣ ଆପଣଙ୍କ କଣ୍ଠରେ ବଜ୍ରନିର୍ଘୋଷରେ ଭାରତବର୍ଷର ବିଜୟ ଘୋଷଣା କରିବେ—

ସତ୍ୟ—ଦେଖନ୍ତୁ, ଆପଣ ଭାବପ୍ରବଣତାର ସ୍ରୋତରେ ଭାସି କେବଳ ନିଜର ଘୋର କ୍ଷତିସାଧନ କରୁଛନ୍ତି ।

ଶିବ—( ବିସ୍ମିତ ହୋଇ ) ନିଜର କ୍ଷତି ! ନିଜର କି କ୍ଷତି କରୁଛି ? ଆପଣ ଭୁଲ ବୁଝିଛନ୍ତି । କଣ ପାଇ ନାହିଁ ? ସବୁ ପାଇଛି । ମୋର ଦେଶବାସୀ ମୋତେ ଦେଇଛନ୍ତି ସେମାନଙ୍କର ହୃଦୟର ଗଭୀର ସ୍ନେହ, ଅସରନ୍ତି ଭକ୍ତି, ଅସୀମ ପ୍ରେମ । ଦେଶବାସୀଙ୍କ ଅଶେଷ ପ୍ରେମର ଅନୁଭୂତିରେ ମୋର ଏ ହୃଦୟ-ରାଜ୍ୟରେ ପ୍ରତିକ୍ଷଣରେ ଫୁଟିଉଠୁଛି ସୃଷ୍ଟିର ସହସ୍ର ସହସ୍ର ଶତଦଳ ।

ସତ୍ୟ—ଆପଣ ଚମତ୍କାର ଭାଷାବିନ୍ୟାସ କରିପାରନ୍ତି । କିନ୍ତୁ ମୁଁ ତ କଥା ଶୁଣିବା ଉଦ୍ଦେଶ୍ୟରେ ଆସି ନାହିଁ । ମୁଁ ମୋର କର୍ତ୍ତବ୍ୟ ସମ୍ପାଦନ କରିବା ନିମନ୍ତେ ଆସିଛି । ମୋର ଅନୁରୋଧ, ଆପଣ ଏଥିରେ ପଦେ ଲେଖିଦେବେ—

ଭବିଷ୍ୟତରେ ଆପଣଙ୍କ କାର୍ଯ୍ୟର ପୁନରାବୃତ୍ତି ହେବ ନାହିଁ ବୋଲି ।

ଶିବ—ଦେଶକୁ ସ୍ୱାଧୀନ କରିବାକୁ ମୁଁ ଯେ ପଣ କରି ଯାହା ଆରମ୍ଭ କରିଛି ! ସେଇ କର୍ମ ହିଁ ମୋର ଧର୍ମ । ମୁଁ ମୋର ଧର୍ମ କପରି ତ୍ୟାଗ କରିବି ସତ୍ୟବ୍ରତ ବାବୁ ?

ବିଷ୍ଣୁ—( ପ୍ରବେଶ )

ଶିବ—ଆଜ୍ଞା ! ଆମର ସପ୍ତର୍ଷିମଣ୍ଡଳରୁ ଜଣେ—

ବିଷ୍ଣୁ—( ହସି ) ଓଃ ଆମର ସତ୍ୟବ୍ରତ କି ?

ସତ୍ୟ—ନମସ୍କାର ।

ବିଷ୍ଣୁ—ଦୀର୍ଘଜୀବୀ ହୁଅ, ଦୀର୍ଘଜୀବୀ ହୁଅ ।

ସତ୍ୟ—( ଶିବଙ୍କୁ ଗୃହିଁ ) ମୋର କର୍ତ୍ତବ୍ୟ ସମ୍ପାଦନ କରିବାକୁ ସୁଯୋଗ—

ଶିବ—ଆପଣ ଭାରତବର୍ଷର ସନ୍ତାନ, ମୋର ଭାଇ, ମୋର ବନ୍ଧୁ । ମୋର ଏ ଦେହ ଆପଣଙ୍କ ହାତରେ ସମର୍ପଣ କରିଦେଲି ବନ୍ଧୁ ମୋର !

ବିଷ୍ଣୁ—( ଆବେଗରେ ) ତୁମେ ଆସିଛି ଶିବୁକୁ ଗିରଫ କରିବାକୁ ?

ସତ୍ୟ—ମୋର କର୍ତ୍ତବ୍ୟ ।

ଶିବ—ଶୀଘ୍ର ଆପଣଙ୍କ କର୍ତ୍ତବ୍ୟ କରିଯାଆନ୍ତୁ । ( ହସି ) ଆମେ କଲେଜ ବାରଣ୍ଡାରେ ବସି ଦଧୀଚି ଋଷିଙ୍କର ଉପାଖ୍ୟାନ ଆଲୋଚନା କରୁଥିଲେ । ମୋର କଣ ମନେ ହେଉଛି ଜାଣନ୍ତି ! ମୋର ମନେ ହେଉଛି, ମୁଁ ସେଇ ଦଧୀଚି । ଏ ଦେଶର ଦାରିଦ୍ର୍ୟ-ବୃତ୍ରାସୁରକୁ ବିନାଶ କରିବେ ଏ ଦେଶର ପୀଡ଼ିତ ନିର୍ଯ୍ୟାତିତ ଜନତା ମୋର ଏଇ ହାଡ଼

ମାଂସର ସହାୟତାରେ । ଦେବତାମାନେ ଦାବୀ କରିଥିଲେ ଦଧୀଚିଙ୍କର ଅସ୍ଥି । ଆଜି ଆପଣ ମୋର ଦେହର ଅବସାନ ଘଟାଇବାକୁ ଉଦ୍‌ବୋଧନା ଦେଇଛନ୍ତି । ଆଜି ମୋର ପ୍ରାଣ-ରାଜ୍ୟରେ ତ୍ୟାଗର ମହାଚେତନା ଜାଗ୍ରତ କରାଇ ଦେଇଛନ୍ତି ଆପଣ ।

ସତ୍ୟ—( ସ୍ୱଗତ ) କଥାର ତେଜରେ ପାଷାଣ ପ୍ରାଣ ତରଳି ଯାଉଛି । ଆଉ ଡେରି କରିବା ଉଚିତ ନୁହେଁ ।

ଶିବ—ଆଉ ଭାବୁଛନ୍ତି କଣ, ହାଅନ୍ତୁ ଏଇ ମୁଁ ହାତ ବଢ଼ାଇ-ଦେଲି । ମୋ ହାତଧରି ନେଇଯାଅନ୍ତୁ । ଅନ୍ଧ ପଥିକ ମୁଁ—

ବସ୍ତୁ—( ଆବେଗରେ ) ଆଖିରେ ଦେଖିବାକୁ ସିନା ଗୋଟିଏ, କିନ୍ତୁ ତାର ଆତ୍ମାଟା ଯେ ହଜାର ହଜାର ନରନାରୀଙ୍କ ହୃଦୟରେ ବସା ବାନ୍ଧି ରହିଲାଣି । ଶିବୁର ବିଚ୍ଛେଦରେ ଗଗନ-ପବନ ସବୁ ବ୍ୟଥିତ ହୋଇପଡ଼ିବ ସତ୍ୟବ୍ରତ !

ଶିବ—ଆଉ ଡେରି କରିବା ଉଚିତ ନୁହେଁ । ( ଭିତରି ଆଡ଼କୁ ଅନାଇଁ ) ବୋଉ ! ବୋଉ !

ବସ୍ତୁ—ମୁଁ ଡାକ ଦେଉଛି—

ଶିବ—ବୋଉ ! ବୋଉ !

ଶାନ୍ତ—( ପ୍ରବେଶ ) ( ଲୋକ ଦେଖି ସଙ୍କୋଚରେ ଠିଆହେବା )

ଶିବ— ବୋଉ ! ( ଅଗ୍ରସର ହୋଇ) ଏ ଜଣେ ଶାନ୍ତିରକ୍ଷକ ରାଜ-କର୍ମଚାରୀ । ଆସିଛନ୍ତି ରାଜାଙ୍କ ଅତିଥି ଭବନକୁ ମତେ ନେଇଯିବେ—

ଶାନ୍ତ—( ଆବେଗରେ ) ବାପ ! ବାପ ରେ ! ମୋ ଶିବୁ ! ମୋ ଘର ଯେ ଅନ୍ଧକାର ହୋଇଯିବ—

ଶିବୁ—( ସହଜ ଶାନ୍ତ ଭାବରେ ) ବୋଉ ! ତୁ ଯେ ମୋତେ ଆଶୀର୍ବାଦ ଦେଇଛୁ ଦେଶହିତବ୍ରତ ପାଳନ କରିବାକୁ ! ସେ ବାକ୍ୟ ଯେ ଅତି ସତ୍ୟବାକ୍ୟ ! ତୁ ବୋଉ ! କାନ୍ଦ ନାହିଁ । ତୋ ଆଖିରେ ଅଶ୍ରୁ ଦେଖିଲେ ମୁଁ ସହ୍ୟ କରିପାରିବ ନାହିଁ । ସହଜ ହୋଇଯା ବୋଉ ! ଶାନ୍ତ ହୋଇଯା । ତୋର ଏ ଶାନ୍ତ ସକରୁଣ ଗମ୍ଭୀର ମୁଖଛବି ଦେଖି ଯାଇଥାଏ । ଏ ଦେଶର ଲକ୍ଷ ଲକ୍ଷ ନରନାରୀଙ୍କ ଜନନୀ ରୂପେ ଦଣ୍ଡାୟମାନା ହୋଇ ତୋର ଶୁଭ ହସ୍ତଟି ମୋର ଏ ମଥା ଉପରେ ରଖିଦେ ବୋଉ !

ଶାନ୍ତ—( ଆବେଗକମ୍ପିତ କଣ୍ଠରେ ) ବାପ ! ମୋ ବାପ !

ଶିବ—( ଅଗ୍ରସର ହେଉ ହେଉ ) କେତେ କାର୍ଯ୍ୟ ଥିଲା ! ଏଇ ଦେଖନ୍ତୁ ଅନ୍ୟମନସ୍କ ହୋଇଯାଉଛି । ମୋତେ ଏକ୍ଷଣି ଯିବାକୁ ହେବ, ପୁଣି ଫେରି ଆସିବାକୁ ହେବ ନାହିଁ, ଏକଥା ଭୁଲି ଯାଇଥିଲି । ମୋ ହାତରେ ହାତକଡ଼ା ପଡ଼ିବ ନାହିଁ ତ ! ଚାଲନ୍ତୁ, ଆପଣଙ୍କର ସମୟ ନଷ୍ଟ ହେଉଛି । ( ଅଗ୍ରସର ) ବୋଉ ! ଏଇ ଦେଖ, ସଦାନନ୍ଦ ରହିଲା—

ସଦା—( ଉଠିପଡ଼ି ) ( ଆବେଗରେ ) ନାହିଁ ! ନାହିଁ ! ମୁଁ ତୁମକୁ ଛାଡ଼ିବି ନାହିଁ । ମୁଁ ଯେ ବଡ଼ ଆଶା କରି ଆସିଛି ତୁମର ପଦସେବା କରିବି ବୋଲି—

ଶିବୁ—ତୁମର ଏ କଥା ପଦକରୁ ତୁମଠୁ ମୁଁ ସବୁ ସେବା ପାଇ-ଯାଇଛି ସଦାନନ୍ଦ ! ତୁମଠୁ ଦୂରରେ ରହିବାକୁ ହେବ, ଏ ଦୁଃଖ ଯେ ମୋର ବଡ଼ ଦୁଃଖ ସଦାନନ୍ଦ ! ତୁମେ ବୋଉକୁ ନେଇ ଘରକୁ ଯାଅ, ବୋଉର ସେବାଭାର ତୁମ ଉପରେ ରହିଲା ।

ରଘୁମଣି—(ପ୍ରବେଶ) ଆଜିର କାର୍ଯ୍ୟକ୍ରମ—

ଶିବ—(ହସି) ରଘୁମଣି ! ଆଜିର କାର୍ଯ୍ୟକ୍ରମରେ ଥିଲା କଲିକତାର ଓଡ଼ିଆସମାଜର ବାର୍ଷିକ ଅଧିବେଶନରେ ଯୋଗଦେବା । କିନ୍ତୁ—

ରଘୁମଣି—କିନ୍ତୁ ଆଉ କଣ ଆଜ୍ଞା ! ଯିବାକୁ ହେବ । ସେମାନେ ଉତ୍କଣ୍ଠିତ ହୋଇ ଅପେକ୍ଷା କରିଥିବେ—

ଶିବ—(ହସି) ମୋତେ ଯେ ରାଜଭବନକୁ ଯିବାକୁ ହେବ—

ରଘୁମଣି—(ସତ୍ୟବ୍ରତଙ୍କ ଆଡ଼କୁ ଅନାଇଁ) ଯିବାକୁ ହେବ ! ଯିବାକୁ ହେବ ! ନା ! ନା ! ଯିବେ ନାହିଁ । ସବୁ କାର୍ଯ୍ୟକ୍ରମ ଯେ ସ୍ଥଗିତ ହୋଇଯିବ—

ଶିବ—ରଘୁମଣି ! ତୁମେ ଏ ସମୟରେ ଅସ୍ଥିର ହେଲେ ତ ଚଳିବ ନାହିଁ । ମାଷ୍ଟ୍ରେ ! ଆପଣ ବୋଉକୁ ନେଇ ଘର ଭିତରକୁ ଯାଆନ୍ତୁ । ରଘୁମଣି ! ତୁମେ ସଦାନନ୍ଦକୁ ପାଠଶାଳା କାର୍ଯ୍ୟରେ ନିଯୁକ୍ତ କରିଦେବ । ବିଚରା ବଡ଼ ଆଶା କରି ଆସିଛି । ଆଜି ହିଁ ତାର ଜୀବନର ଯାତ୍ରା ଆରମ୍ଭ କରିଛି । ( ଅଗ୍ରସର ହୋଇ ) ରଘୁମଣି ! ତୁମର ଯେ ଦାୟିତ୍ୱ ବଢ଼ିଗଲା । ମୋର ଆରମ୍ଭ କରିଥିବା କାର୍ଯ୍ୟ ଏମାନେ ଅବଶ୍ୟ ସମ୍ପନ୍ନ କରିବେ । ସେମାନଙ୍କୁ ଉତ୍ସାହ ଦେଇ ଉଦ୍ୟମଶୀଳ କରାଇବ । ମୋତେ ଯିବାକୁ ହେବ । (ଶାନ୍ତିଙ୍କୁ ଚାହିଁ) ତୁ ଘରକୁ ଯା ବୋଉ !

ବସ୍ତ୍ର—ଶିବବୋଉ ! ଧୈର୍ଯ୍ୟ ଧର । ତୁମରି ଇଙ୍ଗିତରେ ତ ସବୁ ହୋଇଛି—

ଶାନ୍ତି—ବାପ ! ମୋତେ ଶକ୍ତି ଦେ ଯେପରି ତୋର ମହତ୍ କର୍ମର ସହାୟତା କରିପାରେ—

ଶିବ—(ହସି) ତୋର ଯେ ଅସୀମ ଶକ୍ତି ବୋଉ ! ତୋର ଶକ୍ତି ନେଇ ତ ମୁଁ ଶକ୍ତିଶାଳୀ ହୋଇଛି ।

ସତ୍ୟ—ଆପଣ ବେଳକୁ ବେଳ ଅବସ୍ଥା ଜଟିଳ କରୁଛନ୍ତି ।

ଶିବ—ଝରକ୍ତ ହେଲେଣି ଆପଣ, କିନ୍ତୁ କଣ କରିବ ? ଏ ମାଟିର ଗୋଟାଏ ପ୍ରବଳ ଆକର୍ଷଣୀ ଶକ୍ତି ଅଛି । ବୋଉ ! ଯିବା ସମୟ ହେଲା ।

ଶାନ୍ତି—(ଗମ୍ଭୀର ଭାବରେ) ବାପ ! ଆଜ ତୋର ଯାତ୍ରା ଆରମ୍ଭ ହେବ । ଦେବ, ଋଷି, ପିତୃପିତାମହ ତୋତେ ଆଶୀର୍ବାଦ ଦିଅନ୍ତୁ । (ଆବେଗରେ) ତୋର ବ୍ରତ ସଫଳ ହେଉ ବାପ ! ଦେଶ ତୋର ପ୍ରିୟ ହେଉ, ତୁ ତୋର ଦେଶର ପ୍ରିୟ ହୋ ବାପ ! (କଣ୍ଠରୋଧ) (ପ୍ରସ୍ଥାନ)

ରଘୁମଣି—(ପଦସ୍ପର୍ଶ କରି) ଆଶୀର୍ବାଦ ଦିଅନ୍ତୁ, ଆପଣଙ୍କ ଆଦେଶ ପାଳନରେ ଯେପରି ତିଳେମାତ୍ର ବ୍ୟତିକ୍ରମ ନ କରେ—

ଶିବ—(ମଥା ସ୍ପର୍ଶକରି) ମୁଁ ଜାଣେ ରଘୁମଣି ! କର୍ମରେ ତୁମର ଦୃଢ଼ ବିଶ୍ୱାସ ଅଛି । ସେଇ ବିଶ୍ୱାସ ହିଁ ଜୀବନଯାତ୍ରା-ପଥରେ ତୁମକୁ ଜୟୀ କରିବ । ପାଠଶାଳାକୁ ଯାଅ ରଘୁମଣି ! ସଦାନନ୍ଦ ! ତୁମେ ରଘୁ ସହିତ ଯାଅ । ମୋର ବେଳ ହୋଇ-ଯାଉଛି ।

ସଦାନନ୍ଦ—ମୁଁ ତୁମ ସହିତ ଯିବି । ତୁମେ ଯେଉଁଠି ରହିବ—

ଶିବ—(ହସି) ମୋ ପାଖରେ ରହିବ ! ମୁଁ ଯାଉଛି ରାଜାଦେଶ ପାଳନ କରିବା ନିମନ୍ତେ । ଫେରି ଫେରିଲେ ତୁମେ ମୋହରି ପାଖରେ ରହିବ ଭାଇ ! ରଘୁମଣି, ସଦାନନ୍ଦକୁ ନେଇ ଯାଅ ।

(ସଦାନନ୍ଦର ହାତ ଧରି ରଘୁମଣି ପ୍ରସ୍ଥାନ)

ସତ୍ୟ—( ସ୍ୱଗତ ) କି କୁକ୍ଷଣରେ ଆଜ ପ୍ରଭାତ ହୋଇଥିଲା ! ବଡ଼ ଦୁଃସାଧ୍ୟ ଲୋକର ସମ୍ମୁଖରେ ପଡ଼ିଗଲି । (ପ୍ରକାଶ୍ୟେ) ଆପଣ ବଡ଼ ନେତା ହେବା ଉଦ୍ଦେଶ୍ୟରେ ଜେଲ ଯିବାକୁ ବାହାରିଛନ୍ତି, ଏଥିରେ ଦୁଃଖ କରିବାର କଣ ଅଛି ? ଆସନ୍ତୁ !

ଶିବ—ନେତା ହୋଇ ଜନସାଧାରଣଙ୍କ ଉପରେ ଆଧିପତ୍ୟ କରିବା ଇଚ୍ଛା ତ ମୋର ନାହିଁ ! ମୋର ହୃଦୟ ଭିତରୁ ନିରନ୍ତର ଗୋଟାଏ ଗୁରୁ ଗର୍ଜନ ଧ୍ୱନି ଉଠୁଛି । (ଆବେଗରେ) ସେ ଧ୍ୱନି ମୋର ବନ୍ୟାପୀଡ଼ିତ ଦୁଃଖୀ ପ୍ରଜାଙ୍କର କାତର କ୍ରନ୍ଦନ—

ସତ୍ୟ—ଆଉ ଶୁଣିବା ସମୟ ନାହିଁ । ଚାଲନ୍ତୁ—

ଶିବ—ଶୁଣିବା ସମୟ ନାହିଁ—ଶୁଣିବେ ନାହିଁ ?

ସତ୍ୟ—ଚାଲନ୍ତୁ । ମୋର ଶେଷ କଥାଟି ଯଦି ରଖିବେ—ପଦେ ମାତ୍ର ସ୍ୱୀକୃତ—ଆନ୍ଦୋଳନରେ ଯୋଗ ଦେଇ ସଭା କରିବେ ନାହିଁ, ପିକେଟିଂକୁ ପ୍ରୋତ୍ସାହିତ କରିବେ ନାହିଁ ।

ଶିବ—(ଉଦାସ ଦୃଷ୍ଟିରେ ଚାହିଁ) ମହାତ୍ମାଙ୍କ ନିର୍ଦ୍ଦେଶ ପ୍ରକାରେ ସଭା କରିବା ଯେ ଆମର କାର୍ଯ୍ୟକ୍ରମରେ ରହିଛି । ନିରକ୍ଷର ଜନସାଧାରଣଙ୍କୁ ରାଜ୍ୟ, ରାଜା ସମ୍ବନ୍ଧରେ ବୁଝାଇ କହିବାକୁ ପଡ଼ୁଛି । ସେମାନେ ଯେ କିଛି ବୁଝିପାରୁ ନାହାନ୍ତି । ମୁଁ ଚାଲିଗଲେ ହୁଏ ତ ଅନ୍ୟ କେହି ବୁଝାଇପାରିବେ ନାହିଁ—

ସତ୍ୟ—(ସ୍ୱଗତ) ଲୋକଟାର କଥାଗୁଡ଼ାକ ବଡ଼ ମର୍ମସ୍ପର୍ଶୀ । (ପ୍ରକାଶ୍ୟେ) ସମୟ ହେଲାଣି ଆଜ୍ଞା ! ଆଉ କେତେ ଅପେକ୍ଷା କରିବ ?

ଶିବ—(ଭିତର ଆଡ଼କୁ ଅଗ୍ରସର ହେଉ ହେଉ) ଏ ସ୍ଥାନଟି ଯେ ମୋର ପିତୃପିତାମହଙ୍କ ଜନ୍ମ-ମରଣର ପବିତ୍ର ତୀର୍ଥକ୍ଷେତ୍ର । ସେମାନଙ୍କ ପଦତଳର ପବିତ୍ର ଧୂଳିରୁ ବିନ୍ଦୁଏ ତିଳକ କରି ନେଇ ଚାଲିଯିବି । ଆଉ ଡେରି ହେବ ନାହିଁ । (ଭୂମି ସ୍ପର୍ଶ)

ଗାୟତ୍ରୀ—(ପ୍ରବେଶ) (ହାତ ଧରି ମୁହଁକୁ ଚାହିଁ) (ଆବେଗକମ୍ପିତ କଣ୍ଠରେ) ମୋର······ତୁମକୁ ଦେଖିବା ଆଶା ଯେ ପୂରଣ ହୋଇ ନାହିଁ—

ଶିବ—ଗାୟତ୍ରୀ ! (ହାତ ଧରି) ଛି, ଆଖିରେ ଲୁହ ଭରି ମୋ ଆଡ଼କୁ ଚାହଁ ନାହିଁ । ତୁମେ ମୋତେ ପ୍ରେରଣା ଦିଅ ଗାୟତ୍ରୀ ! ତୁମର ଶୁଚିଶୁଦ୍ଧ ନାମଟି ଜପ କରି ଯେପରି ଜୟୀ ହୁଏ । ଦେଖ, ସହଜ ଭାବରେ କଥା କହ ଗାୟତ୍ରୀ !

ଗାୟତ୍ରୀ—ମୋତେ ଶକ୍ତି ଦିଅ । ସହ୍ୟ କରିବା ଶକ୍ତି ଦିଅ······ (ପ୍ରସ୍ଥାନ)

ଶିବ—ମାଷ୍ଟ୍ରେ, ମୁଁ ଯାଉଛି । ଫେରିଆସିବି ପୁଣି ଆପଣଙ୍କ ଆଶୀର୍ବାଦରେ—

ବିଷ୍ଣୁ—(ଆବେଗରେ) ଶିବ ! ଶିବ !

ଶିବ—(ଦୁଆର ମୁହଁରୁ) ବୋଉ ! ବୋଉ ! ଗାୟତ୍ରୀ ! (ପ୍ରସ୍ଥାନ) (ସତ୍ୟବ୍ରତ ପ୍ରସ୍ଥାନ)

ବିଷ୍ଣୁ—ଶିବ ! ଶିବ ! (ପଶ୍ଚାତ୍ ଗମନ)

---

# ଦ୍ୱିତୀୟ ଅଙ୍କ

## ତୃତୀୟ ଦୃଶ୍ୟ

ସ୍ଥାନ—ବିଶ୍ୱମ୍ଭରଙ୍କ ସରକାରୀ ବାସଭବନ

(ବାହାର ବାରଣ୍ଡାରେ ବିଶ୍ୱମ୍ଭର ଆସୀନ)

ବିଶ୍ୱ—(ଚିନ୍ତିତ ଭାବରେ ପଦଚାରଣ କରି) ଅଫିସକୁ ଯାଇ ବୁଝି-ଆସିଲି, ଶିବର ଆପ୍ଲିକେସନ ପହଞ୍ଚି ନାହିଁ । କାଲିକି ଲଷ୍ଟ ଡେଟ୍ ହେଇଯିବ । ଅନୁରୋଧ ଉପରୋଧ କରି ଅନେକ ଚିଠି ଲେଖିଲି । ଧୂର୍ଜଟି ଯାଇ ବାରମ୍ବାର କହିଆସିଲା । ସେ ଆମମାନଙ୍କର କୌଣସି କଥା ଶୁଣିଲା ନାହିଁ ।

ହକର—(ରାସ୍ତାରେ) ଆକସ୍ମିକ ଭାବରେ ଶିବ ମିଶ୍ରଙ୍କ ଗିରଫ । ଗୃହଅଗ୍ନିକର ଘଟଣା । ତାର ଯୋଗେ ସମ୍ବାଦ ପ୍ରାପ୍ତ । ଦେଶର ଶ୍ରେଷ୍ଠ ନେତା ଆଜି ସକାଳ ଦଶଟା ସମୟରେ ଜେଲ ବରଣ କରିଛନ୍ତି । (କାଗଜ ଦେଇ ପ୍ରସ୍ଥାନ)

ବିଶ୍ୱମ୍ଭର—(କାଗଜ ଉଠେଇନେଇ ବିଚଳିତ ଭାବରେ) ଶିବ ! ଶିବର ଜେଲ ହୋଇଗଲା ! ଯେଉଁ ଭୟରେ ମୁଁ ଅସ୍ଥିର ହେଉଥିଲି —

ରୋହିଣୀ—(ପ୍ରବେଶ) ରାସ୍ତାରେ ହକର କଣ କହିଲା ? ମୋ ହାତରୁ ଦୁଧ ହାଣ୍ଡିଟା ତଳେ ପଡ଼ିଗଲା ।

ବିଶ୍ୱ—ହକର ଆଉ କହିବ କଣ ? ଏଇ ତ କାଗଜରେ ବଡ଼ ବଡ଼ ଅକ୍ଷରରେ ଛପା ହେଇଛି ଗୌରୀବୋଉ ! ତୁମେ ମୋତେ ଉଚ୍ଛନ୍ନ କରିଦେଲ ଗୌରୀବୋଉ ! ମୁଁ ମନା କରୁଥିଲି—

ରୋହିଣୀ— କଣ ହେଲା ? କେବେ ମୋ ଶିବକୁ ବନ୍ଦୀଘରକୁ ନେଇଗଲେ ?

ବିଶ୍ୱ—ଆଜି ସକାଳେ ଗିରଫ କଲେ । ଦେଖୁନ୍ତୁ ଏଇ କେଇ ଘଣ୍ଟା ଭିତରେ ବିଦ୍ୟୁତ୍ ବେଗରେ ସମ୍ବାଦ ପହଞ୍ଚି-ଯାଇଛି ।

ରୋହିଣୀ—ଏତେ ସୁକୁମାର ଶରୀର ଜେଲର ଯନ୍ତ୍ରଣା ସହ୍ୟ କରିବ କିପରି ? (କାନ୍ଦି କାନ୍ଦି ପ୍ରସ୍ଥାନ)

ଯଦୁ—(ପ୍ରବେଶ) ଶୁଣିଲଣି—ଏଇ ତ ଖବର କାଗଜ ଧରି ବସିଛନ୍ତି—

ବିଶ୍ୱ—(କାଗଜ ରଖିଦେଇ ବିଷଣ୍ଣ ଭାବରେ) ବହୁ ଚେଷ୍ଟା କଲି ଯଦୁ ବାବୁ ! କୌଣସି ଫଳ ହେଲା ନାହିଁ । ଏପରି ଦୁର୍ଭାଗ୍ୟ ମୋର !

ଯଦୁ—ମୁଁ ତ ଦୁର୍ଭାଗ୍ୟ ବୋଲି ଭାବୁ ନାହିଁ ବିଶ୍ୱମ୍ଭର !

ବିଶ୍ୱ—ତୁମେ କାହିଁକି ଭାବିବ ଯଦୁ ବାବୁ ! ତୁମର ପୁଅ, ଜ୍ୱାଇଁ ସମସ୍ତେ ବଡ଼ ବଡ଼ ପୋଷ୍ଟରେ ରହି ସୁଖରେ ସଂସାର କରୁଛନ୍ତି—

ଯଦୁ—ଆଉ ସେ ସୁଖରେ ସଂସାର କଥା କହ ନାହିଁ ଭାଇ ! ଶିବ ମିଶ୍ରଙ୍କୁ ଦେଖିଥିଲି । ଗୋଟାଏ ସଭାରେ କି କଥା ସେ କହୁଥିଲେ ! ତାଙ୍କୁ ଦେଖି, ତାଙ୍କର କଥା ଶୁଣି ମୋର ଛୋଟ ପୁଅ ନିରଞ୍ଜନକୁ ନେଇ ତାଙ୍କର ସେ ପାଠଶାଳାରେ ଛାଡ଼ି ଦେଇ ଆସିଥିଲି । କଣ ହେବାକୁ ଯାଉଥିଲା କିଏ, ଆଜି କଣ ହୋଇ ଫେରିଆସିଛି—

ବିଶ୍ୱ—ସେ ପାଠଶାଳା ହିଁ ସବୁ ଅନର୍ଥର ମୂଳ ଯଦୁ ବାବୁ ! ମନୁଷ୍ୟ ଅତି ଭଲ ହେଲେ ଏଇ ଅବସ୍ଥା ହୁଏ । ଗାୟତ୍ରୀ ମୋର—

ଯଦୁ—ଦେଖ ବିଶ୍ୱମ୍ଭର ! ଆମେ ଜନ୍ମ ହେଉଛେ, ପୁଣି ମରୁଛେ । ନଗଣ୍ୟ ଆମର ଜନ୍ମ । ଶିବ ମିଶ୍ର ଯେ ତିନ କାଳର ମନୁଷ୍ୟ । ତୁମେ ଯଦି ତା ତାର ଗୌରବ ଅନୁଭବ କରିପାରୁନ, ତୁମର ପୁଅ-ନାତି ଏ ଦେଶର ଦେବତା ବୋଲି ତାଙ୍କୁ ପୂଜା କରିବେ ।

ବିଶ୍ୱ— ହଁ ହେ, କହିଲେ କଣ ହେବ ? ଯାଉ ନାହଁ ଜେଲକୁ, ଦେବତା ହୋଇ ପୂଜା ପାଆନ୍ତ—

ଯଦୁ—(ଖେଦରେ) ଦୁର୍ବଳ ଅତି ହୀନଶକ୍ତି । ଏଇ ତ ରାସ୍ତାରେ ଦେଖିଆସିଲି ତାଙ୍କର ସହକର୍ମୀବୃନ୍ଦ ଜୟଧ୍ୱନି କରି ଶୋଭାଯାତ୍ରାରେ ବାହାରିଛନ୍ତି । କଣ୍ଠକରେ ପ୍ରତିବାଦ ସଭା କରିବେ । ସେ ଧ୍ୱନି ମୋର କର୍ଣ୍ଣରନ୍ଧ୍ରରେ ପ୍ରବେଶ କରି ସର୍ବାଙ୍ଗରେ ଶିହରଣ ସଞ୍ଚାର କରାଇଦେଲା । ତୁମେ ବଡ଼ ଭାଗ୍ୟବାନ୍ ବିଶ୍ୱମ୍ଭର ! ଏପରି ସୁନାମଧନ୍ୟ ସର୍ବଗୁଣସମ୍ପନ୍ନ ବ୍ୟକ୍ତିଟିକୁ ଜାମାତା କରି ପାଇଛ । ମୁଁ ତୁମକୁ ଏ ଶୁଭ ଅବସରରେ ଅଭିନନ୍ଦନ ଦେବାକୁ ଆସିଥିଲି ବିଶ୍ୱମ୍ଭର !

(ପ୍ରସ୍ଥାନ)

ବିଶ୍ୱ—ଅଭିନନ୍ଦନ ଜଣାଇବାକୁ ତ କିଛି ଖରଚ ଲାଗୁ ନାହିଁ । ଯଦୁ ଗୋଟାଏ କ୍ଷୁଦ୍ର ଭାଷଣ ଦେଇ ଚାଲିଗଲା । ଗାୟତ୍ରୀ ମୋର ସେ ମାଟି କୁଡ଼ିଆରେ କେତେ ଯନ୍ତ୍ରଣା ପାଇବ !

(ପ୍ରସ୍ଥାନ)

ଗୌରୀ—(ପ୍ରବେଶ) ସେଇ ଗର୍ଭରୁ ଆମେ ଭାଇ ଭଉଣୀ ପାଞ୍ଚୋଟି ଜନ୍ମ ହୋଇଥିଲୁ । ମୋ ଭାଗ୍ୟ ଦେଖ, ଆଉ ଗାୟତ୍ରୀର ଭାଗ୍ୟ ! କ୍ୱାଇଁ ସୁନ୍ଦର ହୋଇଛନ୍ତି ବୋଲି ବୋଉ ମୋର ଧରି ବସି ବିଭା କରାଇଦେଲା, ଏବେ କାନ୍ଦୁଛି । ବାପା ମଧ୍ୟ

କ  ଧରଣର ମନୁଷ୍ୟ କେଜାଣି ? ମୋ ସ୍ୱାମୀଙ୍କୁ ନିନ୍ଦା କରୁଛନ୍ତି । ଏଣିକି ଯଦି କିଏ କହିବେ, ଆଉ କେବେ ଏଠିକି ଆସିବି ନାହିଁ । (ପ୍ରସ୍ଥାନ)

ବିଶ୍ୱ—(ପ୍ରବେଶ) ଗୌରବୋଉ କହୁଛି, ଶିବ ଜେଲରୁ ଫେରିବା ପର୍ଯ୍ୟନ୍ତ ଗାୟତ୍ରୀ ଏଠି ଆସି ରହୁ । କିନ୍ତୁ ସେ ମଧ୍ୟ ଗୋଟାଏ କି ଧରଣର ହେଲଣି, ଶାଶୁଙ୍କୁ ଛାଡ଼ି ଆସିବ ବୋଲି ବିଶ୍ୱାସ ହେଉ ନାହିଁ । ଯଦିବା ଆସିବ, ଶିବ ଫେରିବା ଯାଏ ମୋ ପାଖରେ ରହିବ । (ବ୍ୟଥିତ ହୋଇ) କିନ୍ତୁ ସେ ଯେଉଁ ପଥରେ ଗତି କଲଣି, ଜେଲ ଅବଧି କିଏ କେବେ ଶେଷ ହେବ ! କିଏ କରିବ ? ସବୁ ଅନ୍ଧକାର ଦିଶୁଛି । (ପ୍ରସ୍ଥାନ)

(ଗାୟତ୍ରୀର ମାତାମହ ପ୍ରବେଶ)

ମାତାମହ—ବିଶ୍ୱନାଥର କାହିଁକି ଏତେ ବ୍ୟସ୍ତ ହେଉଛି ମୁଁ କିଛି ବୁଝି ପାରୁ ନାହିଁ । ଗାୟତ୍ରୀକୁ ମୁଁ ଏଇ ହାତରେ ଅକ୍ଷର ଲେଖି ପାଠ ପଢ଼ାଇଅଛି । ପଦ୍ମ, ମା ଜାଣିପାରୁ ନାହିଁ ସେ । ଭାବିଲେ କଣ୍ଠରୋଧ ହୋଇଯାଉଛି । ଶିବର କଥା! କିଏ କହିବ ? ଅଲୌକିକ ଶକ୍ତିସମ୍ପନ୍ନ ବ୍ୟକ୍ତି ସେ—

ରୋହିଣୀ—(ପ୍ରବେଶ) ଶୁଣିଲଣି ବାପା ? କେଡ଼େ ବଡ଼' ଘଟଣା ସତେ ଘଟିଗଲା ! ମୋ ଶିବୁର ସୁକୁମାର ଶରୀର ବନ୍ଦୀଘରର ଦୁଃଖ ସହ୍ୟ କରିବ କପରି ?

ମାତାମହ—ରୋହିଣୀ ! ତୁ କଣ କହୁଛୁ ? କାହା କଥା କହୁଛୁ ?

ରୋହିଣୀ—ଶିବର କଥା, ଜେଲକୁ ନେଇଗଲେ—

ମାତାମହ—(ଶାନ୍ତ ସହଜ ଭାବରେ) ଶିବକୁ ଜେଲକୁ ନେଇଗଲେ ନା ସେ ନିଜେ ଜେଲ ବରଣ କଲା ? ଆହା-ହା ! ମନୁଷ୍ୟ ଜୀବନ, ଜନ୍ମ ସାର୍ଥକ ସାଫଲ୍ୟମଣ୍ଡିତ ହୋଇଗଲା ରୋହିଣୀ !

ଶିବ ଯେ ଆମର ତନକୁଳର ପ୍ରଦୀପ ତାହା ନୁହେଁ, ଦେଶର-ଜାତିର ପ୍ରଦୀପ ।

ରୋହିଣୀ—ତୁମେ ତାର କଲ୍ୟାଣ କାମନା କର ବାପା ! ସେ କପରି ଅତିଶୀଘ୍ର ଫେରିଆସୁ ।

ମାତାମହ—କେଉଁଠିକି ସେ ଫେରିଆସିବ ରୋହିଣୀ ! ଆମର ଏ କ୍ଷୁଦ୍ର ବେଷ୍ଟନୀ ଭିତରକୁ ? ପକ୍ଷୀ ଉଡ଼ିଗଲାଣି ଗଗନମାର୍ଗକୁ, ସେ ଆଉ ପିଞ୍ଜରାକୁ ଫେରିଆସିବ ନାହିଁ । ଯୁଗ ଯୁଗ ଧରି ଏ ଧରଣୀ ତପସ୍ୟା କରି ଶିବ ତୁଲ୍ୟ ପୁତ୍ରରତ୍ନ ପାଇଛି । ମହାମାନବଙ୍କ ପ୍ରେରଣାରେ ମହାମାନବ ପ୍ରେରିତ ହୁଅନ୍ତି । ଶିବ ତାର ଆତ୍ମାର ପ୍ରେରଣାରେ ପ୍ରେରିତ ହୋଇଯାଇଛି । ସେ ତ ଆଉ ତୋ ଭଳି କିମ୍ବା ମୋ ଭଳି ସାଧାରଣ ମନୁଷ୍ୟ ନୁହେଁ—

ରୋହିଣୀ—ତୁମେ ତ ବାପା ତାକୁଇ ପସନ୍ଦ କରିବସିଲ—

ମାତାମହ—ତୋ ଗାୟତ୍ରୀର ପରମ ସୌଭାଗ୍ୟ ଯେ ଶିବ ତୁଲ୍ୟ ପତି ନୁହେଁ, ଶିବଙ୍କୁ ପତିରୂପେ ପାଇଛି । ସେ ତ ଆଜିର କଥା ନୁହେଁ, ଜନ୍ମ ଜନ୍ମ ଧରି ସେ ଦୁହେଁ ପତିପତ୍ନୀ ରୂପେ ଆସିଛନ୍ତି, ଯାଇଛନ୍ତି ।

ରୋହିଣୀ—ତୁମେ କଣ କହୁଛ କେଜାଣି ମୁଁ ବୁଝିପାରୁ ନାହିଁ । ଗୌରୀବାପା ଦୁଃଖରେ ମୁଣ୍ଡ ଧରି ବସିଲେଣି । ମୁଁ ଏକ୍ଷଣି ତାଙ୍କୁ ସମ୍ଭାଳିବି କଣ କହ ?

ମାତାମହ—ବିଶ୍ୱମ୍ଭର ଦୁଃଖ କରୁଛନ୍ତି, କ୍ୱାଲିଁ ତାଙ୍କର ବଡ଼ ଗୃହକରି କଲ ନାହିଁ, ଝିଅ ତାଙ୍କର ବଡ଼ କୋଠାଘରେ ରହିପାରିଲା ନାହିଁ ବୋଲି; କିନ୍ତୁ ଶିବର ମହତ୍ ଭାବନା କଥା ସେ ବୁଝି ପାରି ନାହାନ୍ତି କି ବୁଝିପାରିବେ ନାହିଁ । ତୁ ଶୁଣିଲେ

ଆଶ୍ଚର୍ଯ୍ୟ ହେବୁ ରୋହିଣୀ ! ସେ କେଉଁ ଅତୀତ କାଳରେ ଗୋଟିଏ ନାଟକ ଲେଖିଥିଲା, ସେଥିରେ ସେ ଆଜିର ଘଟଣାଟି ଲେଖିଦେଇଛି—

ରୋହିଣୀ—ତୁମେ ତ ସେ କଥା ମୋତେ କହି ନାହଁ !

ମାତାମହ—ମୁଁ ବିସ୍ମୟବିହ୍ୱଳ ହୋଇ ଭାବୁଛି, ତାର ଜୀବନର ଯାତ୍ରାପଥ ଏପରି ଭାବରେ ମହୋଜ୍ଜ୍ୱଳମୟ ହେବ ବୋଲି ଶିବ ଜାଣିପାରିଲା କପରି ? ସେ ଲେଖିଛି—

ଯଦୁନାଥ—(ପ୍ରବେଶ)                    (ରୋହିଣୀ ପ୍ରସ୍ଥାନ)

ଯଦୁନାଥ—ନମସ୍କାର ଆଜ୍ଞା ! ଆସିଥିଲି ଆପଣଙ୍କୁ ଅଭିନନ୍ଦନ ଦେବାକୁ । ଆପଣଙ୍କୁ ନ ଦେଖି ଫେରି ଯାଇଥିଲି । ଘରେ ଆଉ ମନ ରହିଲା ନାହିଁ । ଆଜିର ପରି ମହାନ୍ ଦିନରେ ମନ ଘରେ ରହୁ ନାହିଁ କି ବାହାରେ ରହୁ ନାହିଁ ।

ମାତାମହ—ଆସ ଯଦୁନାଥ ! ଭଗବାନ ତୁମର ମଙ୍ଗଳ କରନ୍ତୁ ।

ଯଦୁ—ଆଜିର ପରି ଦିନରେ ହୃଦୟ-ଯମୁନା ଉଚ୍ଛୁଳି ଉଠୁଛି । ଆବେଗରେ ରଚି ହୋଇଯାଉଛି ବନ୍ଦନା ବାକ୍ୟ—

ମାତାମହ—ଆହା ! କି ଅମୃତୋପମ କଥା ତୁମେ କହୁଛ ଯଦୁନାଥ ! ଆଜି ମୋର ମନେ ପଡ଼ୁଛି—

ଯଦୁ—ଅତୀତର ଅନେକ କଥା ମନେ ପଡ଼ୁଛି ଆଜ୍ଞା !

ମାତାମହ—ମୁଁ ସେଇ ଅତୀତର କଥା ଭାବୁଛି । ଶିବୁ କଲେଜରେ ପ୍ରବେଶ କରିବା ସମୟରେ ମୁଁ ଥିଲି ତାର ସଂସ୍କୃତ ଅଧ୍ୟାପକ । ସେ ସମୟରେ ସେ ଖଣ୍ଡିଏ ନାଟକ ଲେଖି ମୋତେ ଦେଇଥିଲା । ତାର ନିଜ ଜୀବନଟିକୁ ସେଥିରେ ଲେଖି ଦେଇଛି । ଦେଶର ସ୍ୱାଧୀନତା ନିମନ୍ତେ ସମର କରି କପରି ସେ ଜେଲକୁ ଗଲା—

ଯଦୁ—ଏଁ କଣ କହୁଛନ୍ତି, ଜେଲକୁ ଯିବା କଥା ମଧ୍ୟ ଲେଖି ଦେଇଛନ୍ତି !

ମାତାମହ—ପୋଲିସ ସାହେବ ଆସି ଗିରଫ କରିନେବା ଦୃଶ୍ୟଟି ତୁମକୁ ଶୁଣାଇବ ?

ଯଦୁ—ଶୁଣାନ୍ତୁ ! ଶୁଣାନ୍ତୁ ! ଜୀବନଟାକୁ ତ ମାଟି କରିଦେଲି ଆଜ୍ଞା ! ଆପଣାର ମହତ୍ତ୍ୱ ସମ୍ବନ୍ଧରେ ଚିନ୍ତା କରିବାକୁ ଅବସର ପାଇଲି ନାହିଁ ! ଆପଣ ମୋତେ ମହାପୁରୁଷଙ୍କ ଜୀବନୀ ବୃତ୍ତାନ୍ତ ଶୁଣାନ୍ତୁ । ଭକ୍ତ ତ ପାଇପାରିଲି ନାହିଁ—

ମାତାମହ—କଥାଗୁଡ଼ିକ ମନେ ନାହିଁ । ଝାଡାଝା ଟିକିଏ ହଜେଇ ଦେଲେ । କିନ୍ତୁ ସେ ଦୃଶ୍ୟ ଆଖି ଆଗରେ ରହିଛି । ଶିଷ୍ୟ, ସହକର୍ମୀବୃନ୍ଦ ଘର ପାଖରୁ ଘେରି ରହିଛନ୍ତି, ପୋଲିସ ଅଫିସର ଠିଆ ହୋଇଛନ୍ତି ବାନ୍ଧିନେବାକୁ । ସହକର୍ମୀମାନଙ୍କ ବିଚ୍ଛେଦରେ ବ୍ୟାକୁଳ ହୋଇ ଗାଇ ଯାଇଛନ୍ତି । ଶୁଣ—

"ଛିନ୍ନ କରିଦିଅ ପ୍ରାଣୁଁ ଏ କ୍ଷୁଦ୍ର ବନ୍ଧନ
ଜଡ଼ ସୁପ୍ତ ହୃଦ ଉଠୁ କରିଣ ସ୍ପନ୍ଦନ ।
ଅନ୍ଧକାର କାରାକକ୍ଷ ହେଉ ମୋର ସ୍ୱର୍ଗ
ଜାଗିଉଠୁ ଅନ୍ତରେ ମୋ ଦେଶ ଅନୁରାଗ ।
ଆତ୍ମାକୁ ନିଃଶେଷ କରି କରେ ସମର୍ପଣ
ଏ ଦେଶର ପଦତଳେ । ଆହେ ବନ୍ଧୁଗଣ,
ତୁମରି ସେବାରେ ହେଉ ଜୀବନ ଉତ୍ସର୍ଗ
ବନ୍ଦୀଗୃହେ ବସି ଯେହ୍ନେ ସାଧିବି ମୁଁ ଯୋଗ ।
ଆଜଠାରୁ ଏହି ଗ୍ରାମ, ଗିରିନଦୀ କୂଳ
ରହିଯିବ ଦୂରେ । ମୋର ନୟନ ଯୁଗଳ,

ରହିବ ବଞ୍ଚିତ ହୋଇ ଦର୍ଶନସୁଖରୁ ।
ସମ୍ଭାଷଣ କଥାଗଣି, ଏ ମୂକ ମୁଖରୁ
ହେବ ନାହିଁ ଉଚ୍ଚାରିତ । ଭାବର ଉଚ୍ଛ୍ୱାସେ,
ବକ୍ଷ ମୋ ବିଦୀର୍ଣ୍ଣ ହେବ ଖର ତପ୍ତ ଶ୍ୱାସେ ।
ଅରୁଣ ରଙ୍ଗରେ ହୋଇଣ ରଞ୍ଜିତ, ନିତ
ତୃଣତରୁ ପ୍ରସ୍ଫୁଟିତ ହେବ ପୁଷ୍ପବୀଥି ।
ସେ ସୌରଭ ଧରି ଆସି ମୃଦୁ ସମୀରଣ
ପରଶିବ ନାହିଁ ଆଉ ମୋର ଦେହ ମନ ।
କରଯୋଡ଼ି ଚାହିଁ ଚାହିଁ ସୂର୍ଯ୍ୟାସ୍ତ ଗଗନେ
ବିଲୀନ ମୁଁ ହେବ ନାହିଁ ମଧୁର ସ୍ୱପନେ ।
ପଥପ୍ରାନ୍ତୁ ବହିଆସି ବ୍ୟାକୁଳ ବତାସ
ବଦନେ ହେଲେ ଦେବ ନାହିଁ ଅଙ୍ଗେ ସ୍ନେହସ୍ପର୍ଶ ।
ପ୍ରିୟ ବନ୍ଧୁଗଣ ମୋର ଦିଅ ହେ ଆଶିଷ
କଳ୍ପନାରେ ଲଭେ ଯେହ୍ନେ ତବ ପ୍ରେମସ୍ପର୍ଶ ।

ଯଦୁ—ଆଜ୍ଞା ! ମୁଁ ଯେ ଭାବରେ ବିହ୍ୱଳ ହୋଇଗଲିଣି ! ମଝିରେ ମଝିରେ ମୋର ବିହ୍ୱଳତାକି ପ୍ରକାଶ ନ କରି ରହି ପାରୁ ନାହିଁ । ସେ ତରୁଣ ପ୍ରାଣରେ ଦେଶପ୍ରେମର ଗୌରବ ଉଦ୍ଭାସିତ ହୋଇ ଉଠିଥିଲା । (ଆବେଗରେ) ହେ ନିଷ୍କଳଙ୍କ ପୁରୁଷ, ତୁମେ ଯେଉଁଠି ଥାଅ, ଏ ଭକ୍ତହୀନର ନମସ୍କାରଟି ଗ୍ରହଣ କର ।

ମାତାମହ—ଏବେଲେ ବିସ୍ମିତ ହେବାକୁ ହେଉଛି । ସେ ବୟସରେ ସେ ମହାତ୍ମା ଗାନ୍ଧିଙ୍କ ଅଭ୍ୟୁଦୟର ସଙ୍କେତ ପାଇଥିଲେ ! ଶୁଣ—

"ଦିଅ ସ୍ନେହ ଆଲିଙ୍ଗନ, ନେବି ମୁଁ ବିଦାୟ,
ପରମ ଈଶ୍ୱର ତବ ହୁଅନ୍ତୁ ସହାୟ ।
ସତ୍ୟର ପୂଜାରୀ ବଜାଉ ଅଛନ୍ତି ଦୂରେ
ଜୟ ଶଙ୍ଖ, ସେ ନିର୍ଘୋଷ ଶୁଭେ ଘରେ ଘରେ ।
ହୋଇଅଛି ଅବସାନ ଅମା ଅନ୍ଧକାର,
ପୂରବ ଗଗନେ ଦିଶେ ଆଲୋକ ଉଷାର ।
ସତ୍ୟ ଅହିଂସାର ମହା ଅସ୍ତ୍ର ଧରି ହାତେ
ଆବିର୍ଭାବ ହୋଇଛନ୍ତି ମାନବ ଭାରତେ ।
ଡାକନ୍ତି ଆହ୍ୱାନ-ମନ୍ତ୍ର ଦୂରୁ ମହାରଥୀ
ଭୟ ନାହିଁ ! ଭୟ ନାହିଁ ! ସତ୍ୟ ତବ ସାଥି ।
ଜୀବନ-ବେଦିରେ ମୋର, ଯେଉଁ ବ୍ରତ ପୂଜା
କରିଛନ୍ତି ସମାରମ୍ଭ ସେହି ମହାରାଜା,
ପୂରଣ କରନ୍ତୁ ତବ ସକଳ କାମନା,
ସ୍ୱରାଜ ସ୍ୱଦେଶ ହେଉ ତୁମର ସାଧନା ।
ଆହେ ବନ୍ଧୁଗଣ, ଆଜ ବିଦାୟ ସମୟେ
ଆଶିଷ ବରଷିଦିଅ ପରମ ସଦୟେ ।
ଏ ଦେଶର ପଦରଜ ଦେଲି ଶିରଦେଶେ,
ମୃତ୍ୟୁକୁ ମାଧୁର୍ଯ୍ୟମୟ କରେ ଯେହ୍ନେ ଶେଷେ ।

[ ଯଦୁ—(ବୃଦ୍ଧଙ୍କ ହାତ ଧରି ଆବେଗରେ) ପାଇଯାଇଛି, ପ୍ରେରଣା ପାଇଯାଇଛି । ଯିବି, ଦେଶର ସେବାରେ ପ୍ରାଣ ଉତ୍ସର୍ଗ କରିଦେବି । ମୋର ଶେଷ ଜୀବନ ସାଫଲ୍ୟମଣ୍ଡିତ ହୋଇଯିବ । ଆଖି ଆଗରେ ଦିଶିଲାଣି କାରାକକ୍ଷ । (ବୃଦ୍ଧଙ୍କ ହାତ ଉଠାଇ) ଆଶିଷ ହସ୍ତଟି ବୁଲାଇ ଦିଅନ୍ତୁ ଆଜ୍ଞା ! ସେଇ ହେବ ମୋର ଚଳିପଥର ପାଥେୟ । (ପ୍ରସ୍ଥାନ)

ମାତାମହ—ଜାତିର ଉଜ୍ଜ୍ୱଳ ପ୍ରଦୀପ କାରାକକ୍ଷରେ ପ୍ରାଚୀରବୃତ ହୋଇ ରହିଯିବ । ଦେଶବାସୀଙ୍କ ବକ୍ଷେଦରେ ବ୍ୟଥିତ ହୋଇଉଠିବ ତାର କରୁଣ ପ୍ରାଣ । ଦୂରରୁ ଦିଶୁଛି ତାର ଶାନ୍ତ ସୁନ୍ଦର ମୂର୍ତ୍ତି.

ଗୌରୀ—(ପ୍ରବେଶ) ଅଜା ! ବୋଉ ଡାକୁଛି ।                (ପ୍ରସ୍ଥାନ)

ମାତାମହ—ମନୁଷ୍ୟ ମନୁଷ୍ୟ ମଧ୍ୟରେ କି ଅସୀମ ଅସାମଞ୍ଜସ୍ୟ ! ରୋହିଣୀ ମୋର ଆତ୍ମଜା, ଅଥଚ ସେ ମୋତେ ଏପର୍ଯ୍ୟନ୍ତ ବୁଝିପାରି ନାହିଁ । ଗାୟତ୍ରୀ ମୋର ସ୍ୱରୂପଟିକୁ ଦେଖି ପାରୁଥିଲା ଯେପରି ସ୍ୱଚ୍ଛ ଦର୍ପଣରେ ପ୍ରତିବିମ୍ବ,

ନେପଥ୍ୟେ—ଅଜା !

ମାତାମହ—ବିଦ୍ୟାର୍ଜ୍ଜନ କରିଆସିଲି ଆବାଲ୍ୟରୁ ଆଜି ପର୍ଯ୍ୟନ୍ତ । ଅକୁଣ୍ଠିତ ଚିତ୍ତରେ ଦାନ କରିଛି ବିସ୍ତର । ତଥାପି ମନରେ ଦାରୁଣ କ୍ଷୋଭ ରହିଗଲା, ଆତ୍ମାକୁ ପ୍ରକାଶ କରିପାରିଲି ନାହିଁ । ଶିବ ତାର ଜୀବନକୁ ଧନ୍ୟ କରିଦେଇଛି । କବି ସେ । ଭବିଷ୍ୟତର ଘଟଣା ଲେଖିଦେଇଛି ଭୂତ କାଳରେ । (ପ୍ରସ୍ଥାନ)

---

# ଦ୍ୱିତୀୟ ଅଙ୍କ

## ଚତୁର୍ଥ ଦୃଶ୍ୟ

ସ୍ଥାନ—ରାସ୍ତା । ସମୟ—ସୂର୍ଯ୍ୟାସ୍ତ

ଭିକାରି—(ଗୀତ ଗାଇ ଗାଇ ପ୍ରବେଶ)

( ଗୀତ )

ଜାତିର ଜ୍ୟୋତି ଜାତିର କୀର୍ତ୍ତି
ଜାତିର ଜୀବ ତୁମେ ।
ନାଅ ଶକତି ଦାଅ ଭକତି
ଏ ଧନ ହୀନ ମନେ ।
ଦେଶର ଦୁଃଖ ଦଇନ୍ୟ ଭାଳି,
ଲୋତକ ତବ ପଡ଼ଇ ଝରି
ମଙ୍ଗଳମୟ ମୂରତି ତବ
ଦେଖୁଛୁ ବସି ଧ୍ୟାନେ ।
ଅସାର ମଣି ସଂସାର ସୁଖ,
ନେଇଛ ବରି ଦୁଃସହ ଦୁଃଖ
ତବ ପ୍ରାଣର ବିରହବ୍ୟଥା!
ଭରଇ ମୋର ପ୍ରାଣେ ।
ବକ୍ଷେ ଦେ ତବ ହେ ମହାତପୀ,
ବିଷାଦ ଛାୟା ଯାଇଛୁ ବ୍ୟାପି
ମୂକ ମୁଖରେ ବସିଛୁ ପିକ
ତୁମର ବକୁଳ ବନେ ।

—•••—

ବିଷ୍ଣୁ—( ପ୍ରବେଶ ) ମାଗୁଣି !

ଭିକାରି—( ସୂର୍ଯ୍ୟାସ୍ତ ଆଡ଼ୁ ମୁହଁ ଫେରାଇ ) ମାଷ୍ଟ୍ରେ !

ବିଷ୍ଣୁ—ମାଗୁଣି !

ଭିକାରି—ସୂର୍ଯ୍ୟ ଅସ୍ତ ହୋଇଯାଉଛନ୍ତି, ପଶ୍ଚିମ ଆକାଶର ମୁଖ-ମଣ୍ଡଳ ମ୍ଳାନ ହୋଇଯାଇଛି । ଶୀତ ସମୀରଣ ବହିଆସି ଆଜି ମନପ୍ରାଣ ପୁଲକିତ କରୁ ନାହିଁ । ମହା ମହୀରୁହଠାରୁ ଏଇ ସାମାନ୍ୟ ତୃଣଦଳଟି ମଧ୍ୟ ବିଷାଦ ନିସ୍ତବ୍ଧ ହୋଇ ରହିଛି । ନୀଡ଼ବାହୁଡ଼ା ପକ୍ଷୀ କରୁଣ କଣ୍ଠରେ ବିଚ୍ଛେଦ ସଙ୍ଗୀତ ଗାଇ ଗାଇ ଉଡ଼ିଯାଉଛି—

ବିଷ୍ଣୁ—ସବୁ ଅନ୍ଧକାର ଦିଶୁଛି ମାଗୁଣି ! ଆମର ହୃଦୟ-ଆକାଶର ଉଦିତ ଅରୁଣକୁ ବାନ୍ଧି ନେଇଗଲେ । ମୁହଁରୁ କଥା ଫିଟୁ ନାହିଁ—ଜିଭ ଯାଇ ଲାଗିଯାଉଛି ତାଳୁରେ । ବଡ଼ ବ୍ୟଥା ରେ ମାଗୁଣି !

ଭିକାରି—ମା'ମଣିଙ୍କ ମୁହଁକୁ ଗୁହିଁଲେ ଯେ ହୃଦୟ ବିଷାଦବିଦଗ୍ଧ ହୋଇଯାଉଛି ।

ବିଷ୍ଣୁ—ଗାପୁଣୀ ମା'ର ମୁହଁକୁ ଗୁହିଁ ଖାଇ ପିଇ ରହିବ କିପରି ? ସେକଥା ଭାବିଲେ ଛାତି ଭିତରେ ଦୁଃଖ ଭରିଯାଉଛି ମାଗୁଣି ! ଦୁଃଖ କରି କେଉଁଠି ଟିକିଏ ଶୋଇ ବସିପଡ଼ିବା, ତାହା ତ ହେବ ନାହିଁ । ଆମ ଉପରେ କେବଳ ପାଠଶାଳାର ଦାୟିତ୍ୱ ଦେଇ ଯାଇଛନ୍ତି ତାହା ନୁହେ, ପ୍ରତିଦିନ ଆମର ଏ ଅଞ୍ଚଳର ଗୋଟିଏ ଗୋଟିଏ ଗାଁକୁ ଯାଇ ଗ୍ରାମବାସୀଙ୍କ ସୁଖ ଦୁଃଖ କଥା ବୁଝି ଆସିବାକୁ ହେବ । ଗୁଲ ମାଗୁଣି, ଯିବା ପାଠଶାଳାକୁ—

ଭିକାରି—ସନ୍ଧ୍ୟା ବନ୍ଦନାଟି ବୋଲିଦେଇ ଶୋଇପଡ଼ିବା ।

ବିଷ୍ଣୁ—ମନରେ ତଳେ ହେଲେ ଉତ୍ସାହ ନାହିଁ ରେ ମାଗୁଣି !

ଭିକାରି—ଆମର ଉତ୍ସାହ, ଆମର ଆନନ୍ଦ ଯେ ଆମ ପାଖରୁ ଦୂରକୁ ଚାଲିଯାଇଛନ୍ତି—

ବିଷ୍ଣୁ—ହଁ ରେ ମାଗୁଣି, ଆମେ ଅବସାଦର ଅନ୍ଧକାର କକ୍ଷରେ ବସିଛେ । ( ଉଭୟେ ପ୍ରସ୍ଥାନ )

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

ସ୍ଥାନ—କାରାକକ୍ଷ । ସମୟ—ସକାଳ

( ପ୍ରହରୀ ପ୍ରବେଶ—ଦ୍ୱାର ଉଦ୍‌ଘାଟନ )

ଶିବ—( ପ୍ରବେଶ )

ପ୍ରହରୀ—( ପଦସ୍ପର୍ଶ କରି ) ( କରଯୋଡ଼ି ଦଣ୍ଡାୟମାନ )

ଶିବ—ଭାଇ ସ୍ୱପ୍ନେଶ୍ୱର !

ପ୍ରହରୀ—ଆଜ୍ଞାବଦ୍ଧ ଦାସ ତବ ପ୍ରଭୁ ! କିନ୍ତୁ କର୍ତ୍ତବ୍ୟର କଠୋର ପୀଡ଼ନ ଆପଣଙ୍କ ପଦସେବାରୁ ମୋତେ ଅନ୍ତର କରି ରଖୁଛି ।

ଶିବ—ତୁମେ ନିତ ସକାଳ ସନ୍ଧ୍ୟାରେ ମୋର କକ୍ଷଦ୍ୱାର ଖୋଲିବା ଆଉ ବନ୍ଦ କରିବା ସମୟରେ ଯେଉଁ ବଚନ-ସୁଧା ମୋର ତପ୍ତ ବକ୍ଷରେ ବୋଳି ଦେଉଛ—

ପ୍ରହରୀ—( ବସିପଡ଼ି ) ପଞ୍ଚଅଶୀ ଟଙ୍କା ମୋର ବେତନ । ସେଥିରେ ମୋର ମାଆ, ବିଧବା ଭଉଣୀ, ପାଞ୍ଚଟି ସନ୍ତାନ ସହ ମୋର ପତ୍ନୀକୁ ପୋଷଣ କରୁଛି । ଅପରାଧ ଯଦି କ୍ଷମା କରିବେ ।

ଶିବ—ତୁମେ ତ କୌଣସି ଅପରାଧ କର ନାହିଁ ସ୍ୱପ୍ନେଶ୍ୱର ଘଇ !

ପ୍ରହରୀ—ମୋର ଏ ଅତି ଇଚ୍ଛା ହିଁ ଅପରାଧ ପ୍ରଭୁ ! ଆପଣଙ୍କ ଦର୍ଶନ-ଲାଭ ଅବଧି ସାଂସାରିକ ସକଳ ତୁଚ୍ଛ ବନ୍ଧନରୁ ମୋ ମନ ମୁକ୍ତ ହୋଇଯାଇଛି ।

ଶିବ—ନା ! ନା ! ବନ୍ଧନରୁ ମୁକ୍ତ ହେବାକୁ ପ୍ରୟାସ କର ନାହିଁ । ତୁମେ ଯେ କର୍ତ୍ତବ୍ୟନିଷ୍ଠ ଭକ୍ତ—

ପ୍ରହରୀ—ମୋ ହୃଦୟ ଭିତରେ ଅଗ୍ନି ଜଳୁଛି । ମୁଁ ଅହରହ ସନ୍ତପ୍ତ ହୋଇ ଚିନ୍ତା କରୁଛି, ଆପଣଙ୍କୁ ଏ ବନ୍ଧନରୁ ମୁକ୍ତ କରିବିଅନ୍ତି ।

ଶିବ—( ପ୍ରହରୀକୁ ଉଠାଇ ) ( ହସି କରୁଣ ଦୃଷ୍ଟିରେ ଚାହିଁ ) ତୁମର ଏ ସ୍ନେହ-ଋଣ ଜନ୍ମ ଜନ୍ମାନ୍ତରେ ପରିଶୋଧ କରି-ପାରିବି ନାହିଁ । ମୋ ନିମନ୍ତେ ଯେ ତୁମେ ଅସାଧ ସାଧନ କରିବାକୁ ବସିଛ । କିନ୍ତୁ ଏ କାର୍ଯ୍ୟଦ୍ୱାରା ଆମର ସତ୍ୟର ସ୍ୱର୍ଣ୍ଣୋଜ୍ଜ୍ୱଳ ଅକ୍ଷର ଉପରେ ଯେ କଳଙ୍କର ଦାଗ ପଡ଼ିଯିବ—

ପ୍ରହରୀ—( ଆବେଗରେ ) କ୍ଷମା କର ! କ୍ଷମା କର ପ୍ରଭୁ ! ଆପଣ ସତ୍ୟର ଧ୍ରୁବ ଜ୍ୟୋତି । ସେଇ ପ୍ରଖର ଆଲୋକରେ ମୋର ଅସତ୍ୟର କଳ୍ପନା-କୁହେଳିକା ଉଡ଼ିଯାଇଛି । ମୋତେ ଘୃଣା କର ନାହିଁ ପ୍ରଭୁ !

ଶିବ—ତୁମ କଥା ଶୁଣୁ ଶୁଣୁ ମୁଁ ସ୍ୱପ୍ନାବିଷ୍ଟ ହୋଇ ଯାଉଛି, କେବେ ଆଉ କାହାଠାରୁ ଏପରି ମହତ୍ ଶିକ୍ଷା ପାଇଛି ? ତୁମେ ଯେ ପ୍ରଭୁପଦର ଯୋଗ୍ୟ ବ୍ୟକ୍ତି । ତୁମକୁ ପ୍ରହରୀ ରୂପେ କିଏ—

ପ୍ରହରୀ—କିଏ ଆଉ ନିଯୁକ୍ତ କରିବ ! ମୋର ଭାଗ୍ୟ ହିଁ ନିଯୁକ୍ତ କରିଛି । ବାପା ପାଠ ପଢ଼ାଉଥିଲେ ପୁଅକୁ ବଡ଼ଲୋକ କରାଇଦେବେ ବୋଲି—

ଶିବ—ଓଃ ! ଅକାଳରେ ପିତାଙ୍କ ମୃତ୍ୟୁ ହେଲା ! (ହସି) କିନ୍ତୁ ଏଥିରେ କ୍ଷୋଭ କରିବାର କିଛି ନାହିଁ । ତୁମେ ବଡ଼ଲୋକ ନ ହୋଇ ହୋଇଛ ଅତି ବଡ଼ଲୋକ ।

(ଜେଲ୍ ଡାକ୍ତରଙ୍କ ପ୍ରବେଶ, ପ୍ରହରୀ ପ୍ରସ୍ଥାନ)

ଡାକ୍ତର—ନମସ୍କାର ! ନମସ୍କାର ! ଆପଣଙ୍କ ସ୍ୱାସ୍ଥ୍ୟ ଭଲ ଅଛି ତ ?

ଶିବ—(ଆବେଗରେ) ତୁମକୁ ଦେଖିଲେ ମୋର ମନେ ହୁଏ ତମେ ମୋର ସାନଭାଇ । ତୁମର ସ୍ନିଗ୍ଧ ସୁନ୍ଦର ମୂର୍ତ୍ତି ଦେଖିଲେ ମୋର ମନ ଉଚ୍ଛ୍ୱସିତ ହୋଇଉଠେ । ତୁମକୁ ମୁଁ ଆପଣ ବୋଲି କହିପାରେ ନାହିଁ ।

ଡାକ୍ତର—ଆପଣ ଦେଶଭକ୍ତ । ଦେଶ ଆପଣଙ୍କର ଭକ୍ତ । ମୋର ସୌଭାଗ୍ୟର ଅନ୍ତ ନାହିଁ । ଆପଣଙ୍କର ସ୍ନେହଭାଜନ ହୋଇ-ପାରିଛି—

ଶିବ—କାଲି ରାତିସାରା ଅଜସ୍ର ଧାରାରେ ଜଳ ଝରୁଛି ।

ଡାକ୍ତର—ଗୃହଆଡେ ସର୍ଦ୍ଦି କାଶର ପ୍ରଭାବ ପଡ଼ିଛି । ପଚାରୁଥିଲି, ଆପଣଙ୍କ ଶରୀର—

ଶିବ—(ଦେହକୁ ଚାହିଁ) ମୋର ଶରୀର ! ଭଲ ତ ଅଛି । ମୋର ନିଜର ସ୍ୱାସ୍ଥ୍ୟ ସମ୍ବନ୍ଧରେ ଚିନ୍ତା କରିବାକୁ ମୋର ଅବସର ନ ଥାଏ ଡାକ୍ତରବାବୁ ! ଦିନ ରାତି କେବଳ ସେଇ ମହା-ମାନବଙ୍କ ସତ୍ୟ ଅହିଂସାର ମହାନ୍ ମନ୍ତ୍ର ଜପ କରି ବସିଛି—

ଡାକ୍ତର—ଦିନ ରାତ୍ତି ଆପଣ କଣ ଭାବୁଛନ୍ତି କେଜାଣି ? ମୁଁ ଯେତେବେଳେ ଆସି ଦେଖୁଛି, ମୋର ମନେ ହେଉଛି, ଆପଣ ମନ୍ତ୍ର ପଢ଼ି ଦେବତା ପୂଜା କରୁଛନ୍ତି ।

ଶିବ—କିନ୍ତୁ ଆଜ ଏଇ ବର୍ଷଣବିରତ ପ୍ରଭାତକାଳରେ ସେ ମନ୍ତ୍ର ପଢ଼ିପାରୁ ନାହିଁ । ଆଖି ଆଗରେ ଦିଶୁଛି ଜଳପ୍ଲାବିତା ଉତ୍କଳ-ଜନନୀ । କ୍ଷୁଦ୍ର କ୍ଷୁଦ୍ର ଗାଁଗୁଡ଼ିକ ଜଳସ୍ରୋତରେ ଭାସିଗଲାଣି । କେତେଗୁଡ଼ିଏ ମନୁଷ୍ୟ ପିଲା ଛୁଆ ନେଇ ପଥପାର୍ଶ୍ୱରେ ଆଶ୍ରୟ ନେଲେଣି । ମୁଁ ଆଜି ସେମାନଙ୍କ ପାଖରେ ନାହିଁ—

ଡାକ୍ତର—(ଧୀରେ ଯାଇ) ଏ ଲୋକଟି ସମ୍ମୁଖରେ ଠିଆ ହୋଇ ମିଥ୍ୟା କହିବାକୁ ଆରମ୍ଭ କଲେ ହୃତ୍‌କମ୍ପ ହେଉଛି । ତଥାପି କଥାଟିକୁ ଘୁରାଇ ଫେରାଇ ସେଇ ମିଥ୍ୟା କଥାଟି ପ୍ରକାଶ କରିଦେଉଛି—

ଶିବ—ଡାକ୍ତରବାବୁ ! ଏ ବର୍ଷାକାଳରେ ଦେଶର ବିଚ୍ଛେଦ ଦୁଃଖ ଏପରି ବ୍ୟଥିତ କରିଦେଉଛି ଯେ ଖବର କାଗଜଟି ପଢ଼ୁଛି କି ନାହିଁ ସ୍ମରଣ ହେଉ ନାହିଁ । ବୋଧହୁଏ ଅନେକ ଦିନ ହେଲା ଖବର କାଗଜ ପଢ଼ି ନାହିଁ ।

ଡାକ୍ତର—(ସ୍ୱଗତ) ସମ୍ବାଦପତ୍ର ଦେବାକୁ ଯେ ମନା କରାଯାଇଛି । ଏ କଥା ମୁଁ ପ୍ରକାଶ କରିବି କପରି ? (ପ୍ରକାଶ୍ୟେ) ଆଜ୍ଞା ! ମୁଁ ଯାଉଛି, ଖବର କାଗଜ ଆପଣଙ୍କ ପାଖକୁ ପଠାଇଦେବି । (ପ୍ରସ୍ଥାନ)

ଶିବ—ଏମାନେ ବିଚ୍ଛିନ୍ନ ଅଞ୍ଚଳର ଓଡ଼ିଆ । ସବୁ ଦିଗରୁ ଅବହେଳିତ ହୋଇ ରହିଛନ୍ତି । କୌଣସିମତେ ଡାକ୍ତର ଗୋଟିଏ ହୋଇ ପାରିଛନ୍ତି । ରାଜ୍ୟ ସମ୍ବନ୍ଧରେ ଏମାନଙ୍କର ଭାବନା

ଆହୁର ଆସି ନାହିଁ । ସମ୍ପୂର୍ଣ୍ଣ ଅଚେତନ ଅବସ୍ଥାରେ ରଜାନୁଗତ ହୋଇ ରହିଛନ୍ତି । ମହାତ୍ମାଙ୍କ ମୁକ୍ତି ମନ୍ତ୍ର କେବେ ଏମାନଙ୍କ କାନରେ ପଡ଼ିବ ? (ପ୍ରସ୍ଥାନ)

ଡାକ୍ତର—(ପ୍ରବେଶ) ବର୍ଷା ଯୋଗୁଁ ସମ୍ବାଦପତ୍ର ଆସି ନାହିଁ ବୋଲି କହିଦେବ । କିନ୍ତୁ ଏଠିରେ କଥା କଣ କହିବ ?

ଶିବ—(କେଉଁ ଆଡ଼କୁ ନ ଚାହିଁ ଖାତା ଧରି ପଢ଼ି ପଢ଼ି ପ୍ରବେଶ)

ମନୋହରପୁର, ଅତି ପ୍ରିୟ ମୋର
ଦୂରୁ ମୋତେ ଦିଶେ ତୋ ମନ୍ଦିରଚୂଳ ।
ଗ୍ରାମ ପ୍ରାନ୍ତେ ତାର ସ୍ୱଚ୍ଛ ସରୋବର
ଫୁଟିଅଛୁ କେତେ କୁମୁଦ କହ୍ଲାର ।
ପୋଖରି ପୁଷ୍କରିଣୀ ତାଳତରୁ ତୀରେ
ଊର୍ଦ୍ଧ୍ୱ ଯୋଡ଼ି କର ଚାହେଁ କି ଅମ୍ବରେ ।
ଧ୍ୟାନରତ ଯୋଗୀ ସମ ଟେକି ମଥା
ଜଣାଏ କି ତାର ହୃଦୟ-ବାରତା ।

ଡାକ୍ତର—(ଅଗ୍ରସର ହୋଇ) ଆଜ୍ଞା !

ଶିବ—(ଚମକି) ଶୁଣ ଡାକ୍ତରବାବୁ ! ମୋ ଜନ୍ମଭୂମିର ବନ୍ଦନା ଲେଖିଛି ଶୁଣିବ ! ବନ୍ଦନା ନୁହେ, ସ୍ତୁତି ଗୀତିକା । ଲେଖିଛି ମୁଁ, ପଢ଼ୁଛି, ଶୁଣୁଛି—

ବାଲ୍ୟ କୈଶୋରରେ ବସି ତାର ତୀରେ
ଭସାଏ ପତ୍ରର ଘରବସିନ୍ଧୁ ନୀରେ ।
କୁଟଜ କୁସୁମ ମୃଦୁଗନ୍ଧ ଧରି
ସମୀରଣ ଦିଏ ପ୍ରାଣେ ମୋର ଭରି ।
କେବା କଥା କହେ କାନେ କାନେ ମୋର
ଜାଗିଉଠେ ପ୍ରାଣ ଶୁଣି ସେ ମନ୍ତ୍ର ।

ହରଷେ ରୋମାଞ୍ଚ ଉଠେ ହୃଦ ତଳ
କହିବାକୁ କଥା ହୁଏ ମୁଁ ବ୍ୟାକୁଳ ।
ପାଏ ନାହିଁ ଭାଷା ବଢ଼େ ମୋ ବ୍ୟଗ୍ରତା
ବ୍ୟାକୁଳେ ଡାକେ ମୁଁ ଦିଅ ପ୍ରଭୁ କଥା ।

× × × ×

ଯାଇଛୁ କୈଶୋର ଯାଇଛୁ ତାରୁଣ୍ୟ
ହୃଦୟ ହେଲଣି ଭାବର ଅରଣ୍ୟ ।
ନ ଦିଶଇ ପଥ ଘନ ତମିସ୍ରାରେ
ଖୋଜୁଥିଲି ପଥ ଆଲୋକ ଆଶାରେ ।
ପ୍ରଦୀପ ଶିଖାଟି ଧରି ବୁଦ୍ଧ ଶୁଦ୍ଧ
କରିଦେଲେ ମୋର ପ୍ରାଣ ଉଦବୁଦ୍ଧ ।
ଏ ନିବାସସ୍ଥଳ ନୁହେଁ କାରାଗାର
ମନ୍ଦିର ଏ ଅଟେ ଯୋଗସାଧନର ।

ମନେପଡ଼େ ଆଜ ପ୍ରିୟ ବାସସ୍ଥଳ;
ପକ୍ଷୀ ଡାକେ ଯହିଁ ହୁଅଇ ସକାଳ ।
ଅରୁଣ ଉଦୟେ ଦେବମନ୍ଦିରରେ
ବାଜେ ଶଙ୍ଖ ଘଣ୍ଟା ନିତ୍ୟ ପ୍ରତ୍ୟୁଷରେ ।
ସ୍ୱପ୍ନାବସ୍ଥା ସମ ବସି ଶଯ୍ୟାପରେ
ଭାବେ କେତେ କଥା ଭକ୍ତିବିହ୍ୱଳେ ।
ଯୋଡ଼ି ଦୁଇ ହାତ ଡାକେ ପ୍ରଭୁ ମୋର
ଯହିଁ ଥାଅ ତୁମେ ନେଇ ନମସ୍କାର ।
ହେ ପ୍ରାଣ ଦେବତା ତୁମେ ଦିନେ ଦିନେ
ସକଳ ସାଫଲ୍ୟ ଭରିଦିଅ ପ୍ରାଣେ ।

ବୋଲିଦିଅ ମୁଖେ ବିଶ୍ୱାସ ଲବଣ୍ୟ
ବିରାଜ ଅନ୍ତରେ ଚଞ୍ଚଳ ତରୁଣ ।

ଡାକ୍ତର—(ଗଭୀର କରୁଣ ଦୃଷ୍ଟିରେ ଚାହିଁ) ଆପଣ କବି ! ଦେଶ-ଭକ୍ତ କବି ! ଆପଣ ଏ ଅନ୍ଧକାର କାରାଗୃହରେ ଆବଦ୍ଧ ହୋଇ ରହିଛନ୍ତି—

ଶିବ—ଅନ୍ଧକାର ଗୃହରେ ଆବଦ୍ଧ ହୋଇ ରହିବା ଯେ ମୋର ଆବାଲ୍ୟର ଆକାଂକ୍ଷା ଡାକ୍ତରବାବୁ ! କିନ୍ତୁ ସେଇ ମହତ୍ ଅନୁଭୂତି ସହିତ —(ଆବେଗରେ କଣ୍ଠରୋଧ)

ଡାକ୍ତର—ସେଥି ସହିତ ଗାଁ, ଘର, ପ୍ରିୟ, ପରିବାର ସବୁ ସ୍ମରଣ ପଥକୁ ଆସୁଛନ୍ତି । (ସ୍ୱଗତ) ମୁଁ ଭାବିଥିଲି, ଓଡ଼ିଶାର କିଏ ଜଣେ ବଡ଼ ନେତା ଏଠା ଜେଲକୁ ଆସୁଛନ୍ତି; ସେ ଅନ୍ୟ ନେତାଙ୍କ ପରି ହୋଇଥିବେ । କିନ୍ତୁ ଅତି ଆଶ୍ଚର୍ଯ୍ୟ ଅଦ୍ଭୁତ ବ୍ୟକ୍ତି ଏ । (ପ୍ରକାଶ୍ୟେ) ଆଜ୍ଞା !

ଶିବ—ସମୟ ନାହିଁ, ଯିବା ଉଦ୍ୟମରେ ରହିଲଣି—

ଡାକ୍ତର—ଆପଣଙ୍କ କବିତା ଶୁଣୁ ଶୁଣୁ ନିଜକୁ ଭୁଲି ଯାଇଥିଲି । କିନ୍ତୁ ସଜାଗ ହେବାକୁ ହେଲା । ଦୈନନ୍ଦିନ କର୍ମର ବଡ଼ ଶକ୍ତି ଆଜ୍ଞା ! ଆଜି ସନ୍ଧ୍ୟା ପୂର୍ବରୁ ଆସି ଆପଣଙ୍କର ସମୁଦାୟ ଲେଖା ଶୁଣିଯିବି । (ପ୍ରସ୍ଥାନ, ପୁନଃ ପ୍ରବେଶ) ଆଜ୍ଞା, ଆପଣଙ୍କ ଫୁଡ୍ ସମ୍ବନ୍ଧରେ କିଛି କହିଲେ ନାହିଁ ! କାଲି ଆପଣଙ୍କୁ ଜ୍ୱର ହୋଇଥିଲା । ଆପଣଙ୍କୁ ଦେଖିବା କଥା । ଏଣେ ଆପଣଙ୍କୁ ଦେଖି, ଆପଣଙ୍କର କଥା ଶୁଣି ସବୁ ଭୁଲିଯାଇଛି ।

ଶିବ—(ପ୍ରସ୍ଥାନ କରୁ କରୁ ପଛକୁ ଚାହିଁ) ତୁମର ସ୍ନେହ-ଋଣରେ ଋଣୀ ହୋଇ ରହିଯିବି ଡାକ୍ତରବାବୁ !

ଡାକ୍ତର—ଧୀରେ ଧୀରେ ଆପଣ ମୋ ଭିତରେ ଯେଉଁ ମହାନ୍ ଶକ୍ତିର ସଞ୍ଚାର କରାଉଅଛନ୍ତି—

ଶିବ—ତା ତୁଳନାରେ ତୁମର ସ୍ନେହ କିଛି ନୁହେ ବୋଲି ଭାବୁଛ ?

ଡାକ୍ତର—ମୋର ଆଶା ହେଉଛି, ଏପରି ଦିନ ଆସିବ, ଆପଣଙ୍କର ଜଣେ ବଡ଼ ଭକ୍ତ ବୋଲି ଗଣ୍ୟ ହୋଇଯାଇପାରେ—

ଶିବ—ତୁମର ଏଇ ସ୍ନେହ-ସୁଧାଟିକକ ମୋ ନିମନ୍ତେ ସଞ୍ଚିତ କରି ରଖିଥାଅ ଡାକ୍ତରବାବୁ ! ତୁମର କଥା ଶୁଣି ମନେ ହେଉଛି, ଦେଶର ସବୁ ପ୍ରିୟ ବ୍ୟକ୍ତି ଆସି ମୋ ସହିତ ଆଳାପ କରୁଛନ୍ତି । ଆଜି ମୋର ମନୋହରପୁର ମନେ ପଡ଼ୁଛି ଡାକ୍ତରବାବୁ !

ଡାକ୍ତର—ଆପଣଙ୍କ ମା'ଆ—

ଶିବ—ହଁ, ମୋ ବୋଉ ଅଛି । ଆଜି ଏ ସମୟରେ କେଉଁଠି ଏକାକିନୀ ହୋଇ ବସି ମୋର ବିଚ୍ଛେଦ-ବ୍ୟଥାରେ ଅଶ୍ରୁ ମୋଚନ କରୁଥିବ—

ଡାକ୍ତର—ଆପଣଙ୍କର ସ୍ତ୍ରୀ—

ଶିବ—( ସ୍ତମ୍ଭିତ ହୋଇ ରହିଯାଇ ) (ବିଷାଦ କରୁଣ କଣ୍ଠରେ, ସ୍ୱଗତ) ଗାୟତ୍ରୀ ଆଜି ମୋ ପାଖରେ ନାହିଁ । ପ୍ରାଣର ଅତୃପ୍ତ ଆକାଂକ୍ଷା ନେଇ ମଧ୍ୟ ଆଜି ମୁଁ ତାକୁ ଦେଖିପାରିବି ନାହିଁ । (ପ୍ରକାଶ୍ୟେ) ମୋର ମନେ ହେଉଛି, ଗୋଟାକଯାକ ଦେଶ ଆଜି ଗୋଟିଏ କ୍ଷୁଦ୍ର ନାରୀ ମୂର୍ତ୍ତିରେ ପରିଣତ ହୋଇଯାଇଛି । ଆମ ଗାଁ ମନୋହରପୁର । ବଡ଼

ସୁନ୍ଦର ସେ ଗାଁଟି । ସେ ଗାଁର ଦକ୍ଷିଣ ପାଖରେ ଆମ ଘର । କୋଠା ଘର ନୁହେଁ, ମାଟି ଘର । ସେ ଘର ଭିତରେ ଶୋଇଥିବ ମୋ ବୋଉ । ଗାୟତ୍ରୀ ପାଖକୁ ଲାଗି ବସିଥିବ । ବୋଉର ଜୀବନର ଗଣ୍ଠିରଭା ସମ୍ବନ୍ଧରେ ଚିନ୍ତା କଲେ ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଏ ।

ଡାକ୍ତର—ଆପଣଙ୍କ କଥା ଶୁଣିଲେ କବିତା ଶୁଣିଲା ପରି ଲାଗୁଛି ।

ଶିବ—(ଚିନ୍ତିତ ଭାବରେ) ବୋଉ ଅସୁସ୍ଥ ଅଛି ବୋଲି ଲେଖିଥିଲା ମାଗୁଣି । ତାପରେ ତ ଆଉ ଚିଠି ପାଇ ନାହିଁ ! (ଆଖି ପୋଛି)

ଡାକ୍ତର—(ନ ଚାହିଁ) ଚିଠି ପଠାଇଥିଲେ ଆପଣ ନିଶ୍ଚୟ ପାଇବେ । (ସ୍ୱଗତ) ଯାହାହେଉ ସ୍ପଷ୍ଟ କରି କିଛି କହିବାକୁ ପଡ଼ିଲା ନାହିଁ ।

ଶିବ—ବନ୍ଧୁ ମାଷ୍ଟ୍ରେ ବ୍ରହ୍ମପୁର ଜେଲରେ ଥିବା ସମ୍ବାଦ ପାଇଥିଲି । ରଘୁମଣି କେଉଁ ଜେଲରେ ଅଛି ଜାଣିପାରି ନାହିଁ । ଶେଷରେ ସଦେଇଟା ମଧ୍ୟ ଜେଲକୁ ଚାଲିଗଲା । ମୋ ପାଖକୁ ଲେଖିଥିଲା । କି ଅଦ୍ଭୁତ ପରିବର୍ତ୍ତନ ଘଟିଛି ତାର ମନୋ-ରାଜ୍ୟରେ ! ସମଗ୍ର ଦେଶ ଯଦି ଏହି ଭାବରେ ଉଦ୍‌ବୋଧିତ ହୁଅନ୍ତେ, ଗୋଟିଏ ଦିନରେ ସ୍ୱରାଜ-ସମ୍ପଦ ମିଳିଯାଆନ୍ତା ।

ଡାକ୍ତର—(ଘଡ଼ି ଦେଖି) ଅନ୍ୟ ରାଜବନ୍ଦୀମାନଙ୍କୁ ଦେଖି ଯିବାକୁ ହେବ । ଆପଣଙ୍କ ସ୍ୱାସ୍ଥ୍ୟଟା ଟିକିଏ ଦେଖିଦେଇ ଯିବି—

ଶିବ—ମୋର ସ୍ୱାସ୍ଥ୍ୟ ପରୀକ୍ଷା କରିବ ! ଆଚ୍ଛା ଚାଲ । (ଉଭୟଙ୍କ ପ୍ରସ୍ଥାନ)

---

# ତୃତୀୟ ଅଙ୍କ

## ଦ୍ୱିତୀୟ ଦୃଶ୍ୟ

ସ୍ଥାନ—ଶିବସୁନ୍ଦରଙ୍କ ବାସଗୃହ । ସମୟ—ସକାଳ ।

ଭିକାରି—(ଗୁଣୁ ଗୁଣୁ କରି ଗୀତ ଆରମ୍ଭ)

(ଗୀତ)

ମାଗିବାକୁ ଆଜି ମନ ବଳୁ ନାହିଁ;
ମାଗିବି କାହାକୁ ଯାଇ ?
ଦେଇଥାନ୍ତା ଯେହୁ ପରାଣରୁ ପ୍ରୀତି
ଆଜି ସେ ତ ଘରେ ନାହିଁ ।
ଦରିଦ୍ର ଜନର ହୃଦୟ-ବାନ୍ଧବ
ସହିବାକୁ ଦୁଃଖ ହେଲ ଆବିର୍ଭାବ
କୋଟିଏ ଜନମୀ କାନ୍ଦନ୍ତି ବକ୍ଷଲେ
ତବ ଗୁଣ ଗୀତ ଗାଇ ।
ଯେଉଁ ମହାମନ୍ତ୍ର କରି ଉଚ୍ଚାରଣ
କରିଅଛ ବନ୍ଧୁ ବନ୍ଧନ ବରଣ
ଶୁଭୁଛି ସେ ଧ୍ୱନି ସୁଦୂରୁ ପ୍ରଭୁ ହେ
କ୍ଷଣେ କ୍ଷଣେ ରହି ରହି ।
ଆହେ ଋଷୀ ତବ କାରାଗାର ଦ୍ୱାର
ରୋଧିଛ କେସନେ ବହିଣ ଶରୀର
ଝରି ପଡ଼ୁ ନାହିଁ ନୟନରୁ ଅଶ୍ରୁ
ପଦତଳ ଧୂଳି ଛୁଇଁ ।

———

ଶାନ୍ତ—(ଧୀରେ ଧୀରେ ଆସି ଚଉକରେ ବସି) ମାଗୁଣି !

ମାଗୁଣି—ମା !

ଶାନ୍ତ—ଏ ଗୀତଟି ତୁ ନିଜେ ରଚିଛୁ ? କେଜାଣି କେଉଁ କବି ତାର ସ୍ନେହଭକ୍ତିସିକ୍ତ କଥାରେ ଛନ୍ଦ ଦେଇ ବାନ୍ଧିଛି ! ମୋର ମନେ ହେଉଛି, କାଲି ରାତିରେ ମୁଁ ଶିବର ଶୁଣି ଗୀତ ଲେଖୁଥିଲି ।

ମାଗୁଣି—କେତେଗୁଡ଼ିଏ ଗୀତ ଲେଖି ସେ ମୋତେ ଦେଇଥିଲେ—

ଶାନ୍ତ—(ବିଷାଦବ୍ୟଥିତ କଣ୍ଠରେ) ଶିବ ଜେଲ୍ ଯିବା ପୂର୍ବରୁ ?

ମାଗୁଣି—ହଁ ମା ! ଜେଲ ଯିବା ପୂର୍ବରୁ ଲେଖି ଦେଇଥିଲେ । ସେଥିରୁ ଗୋଟିଏ ଗୋଟିଏ ବାଛି ବାଛି ବୋଲୁଛି—

ଶାନ୍ତ—ବିଚ୍ଛେଦ ଘଟିବା ପୂର୍ବରୁ ବିଚ୍ଛେଦରେ ବ୍ୟଥିତ ହୋଇ ଲେଖିଦେଇଛି ସେ । ମାଗୁଣି !

ମାଗୁଣି—ମା !

ଶାନ୍ତ—(ଆବେଗରେ) ଆଜ ଶିବକୁ ଦେଖିବାକୁ ମୋର ବଡ଼ ଇଚ୍ଛା ହେଉଛି । ସେ ବଡ଼ ଇଚ୍ଛାଟା ଯେ କେତେ ବଡ଼—

ମାଗୁଣି—ଏ ବ୍ୟାକୁଳ-ବାସନା ଯେ ଦେଶସାରା ବ୍ୟାପିଯାଇଛି ମା ! ବିଚ୍ଛେଦ-ଦୁଃଖରେ ଗଛର ପତ୍ରଟି ମଧ୍ୟ ଦୋହଲୁ ନାହିଁ, ଗଗନ-ପବନ ସବୁ ନିସ୍ତବ୍ଧ ହୋଇ ରହିଛି—

ଶାନ୍ତ—ମାଗୁଣି ! (ଆବେଗରେ, କେବଳ ମୁଁ ଖାଇ ପିନ୍ଧି ଚଳପ୍ରଚଳ ହେଉଛି, ତାର ବିଚ୍ଛେଦର ବ୍ୟଥା ମୋତେ ସ୍ତବ୍ଧ କରି ଦେଉ ନାହିଁ ।

ଗାପୂଣୀ—(ପ୍ରବେଶ)

ମାଗୁଣି—(ପ୍ରସ୍ଥାନ)

ଶାନ୍ତ— ଗାପୂଣୀ ମା !

ଗାୟତ୍ରୀ—ବୋଉ, ଆପଣ ଆପଣଙ୍କ ପୁଅଙ୍କୁ ପ୍ରତିଶ୍ରୁତି ଦେଇଥିଲେ କେବେ କାନ୍ଦିବେ ନାହିଁ ବୋଲି—

ଶାନ୍ତ—କାନ୍ଦୁ ନାହିଁ ତ ଗାୟତ୍ରୀ ମା ! କହୁଛି, ତାକୁ ସାଧାରଣ ସଂସାରରୁ ସ୍ୱତନ୍ତ୍ରଭାବେ ବଡ଼ କରି ଦେଖିବା ଆଉ ଦେଖାଇବାକୁ ମୋର ଯେଉଁ ପ୍ରବଳ ଇଚ୍ଛା, ସେଇ ଇଚ୍ଛା ହିଁ ଆଜି ତୋତେ ଆଉ ତାକୁ ଏ ଦାରୁଣ ଦୁଃଖ ଦେଉଛି । ମୁଁ ଯଦି ତାକୁ ଆରମ୍ଭରୁ ଉତ୍ସାହ ଦେଇ ନ ଥାନ୍ତି—

ଗାୟତ୍ରୀ—ଆପଣ ଯେ ତାଙ୍କୁ ଜନ୍ମ ହେବା ପୂର୍ବରୁ ଉତ୍ସାହ ଦେଇ ଆସିଛନ୍ତି । ମୋ ଅଜା କହନ୍ତି, ବଡ଼ ଯେ ସେ ଜନ୍ମ ଜନ୍ମାନ୍ତରରୁ ବଡ଼ର ଗର୍ଭରୁ ଜନ୍ମଗ୍ରହଣ କରିଥାଏ । ବୋଉ ! ଆପଣ ଶୁଣିଲେ ବିସ୍ମିତ ହେବେ, ମୋ ଅଜା ଆପଣଙ୍କୁ ଅଭିନନ୍ଦନ ଜଣାଇ ଚିଠି ଲେଖିଛନ୍ତି । ବୋଉ ବାପା କାନ୍ଦୁଛନ୍ତି, କିନ୍ତୁ ଅଜାଙ୍କର ଆନନ୍ଦର ସୀମା ନାହିଁ । ତାଙ୍କୁ ମୋ ଅଜା—

ଶାନ୍ତ—ହଁ ଗାୟତ୍ରୀ ମା, ଶିବକୁ ତୋ ଅଜା ବଡ଼ ଭଲ ପାଆନ୍ତି— ସେ ଦୁହେଁ କେଉଁ ଜନ୍ମରେ ପରସ୍ପର ପ୍ରତି ବଡ଼ ସ୍ନେହାସକ୍ତ ଥିଲେ—

ଗାୟତ୍ରୀ—( ମଥାରେ ପିଠିରେ ହାତ ବୁଲାଇ ) ବୋଉ ! ଶୁଣିଲେ ଆପଣ ବିଶ୍ୱାସ କରିବେ ନାହିଁ—କେବେ କଲେଜରେ ପଢ଼ିବା ସମୟରେ କାବ୍ୟ ଲେଖିଥିଲେ, ସେଥିରୁ ଦୁଇ ପୃଷ୍ଠା ଅଜା ମୋ ପାଖକୁ ପଠାଇ ଦେଇଛନ୍ତି । ଆପଣ ଶୁଣିଲେ ବିଶ୍ୱାସ କରିବେ ନାହିଁ—ସେଇ ଅଠର ବର୍ଷ ବୟସରୁ ତାଙ୍କର କଳ୍ପନାର କାରାଗାରରେ ବସି କବିତା ଲେଖିଛନ୍ତି । ଶୁଣନ୍ତୁ—

"ବନ୍ଦୀଗୃହ ଦଶେ ଅନ୍ଧକାରମୟ
ମନେପଡ଼େ ମୋର ଗ୍ରାମ ଦେବାଳୟ ।
ମନେପଡ଼େ ମୋର ସେଇ ଗ୍ରାମ୍ୟ ପଥ ।
ଯେ ପଥେ କରିଛି କେତେ ଯାତାୟାତ ।
ଦୂର ପ୍ରସାରିତ ସେ ଆମ୍ର କାନନ
ଶାଖାରେ ଶାଖାରେ ପଲ୍ଲବ କମ୍ପନ ।
ପତର ଫାଙ୍କରେ ରବିର କିରଣ ।
ପକ୍ଷୀର କୂଜନ ମୃଦୁ ସମୀରଣ ।
ସୃଷ୍ଟିକରେ ପ୍ରାଣେ ମାୟାର ସ୍ୱପନ
କଳା ଧଳା ଗାଈ କରି ରୋମନ୍ଥନ ।
ତରୁତଳେ ଶୋଇ କରୁଥାନ୍ତି ଧ୍ୟାନ
ଅତି ପ୍ରିୟ ମୋର ସେ ପ୍ରାନ୍ତର ବନ ।
ତରୁଣ ତାପସ ଭ୍ରମି ସେଇ ବନେ
ମୁଗ୍‌ଧଚିତ୍ତେ ଗୀତ ରଚେ ମନେ ମନେ ।
ଆବାଲ୍ୟ ସେ ବନେ ବାନ୍ଧିଥିଲି ବସା
ଦେଇଛି ସେ ପ୍ରାଣେ କେତେ ନବ ଆଶା ।
ସେ କ୍ଷୀଣଛାୟାର କ୍ଷୀଣ କୁଳୁ ଧ୍ୱନି
ସୁମରିଲେ ଶୁଭେ ଅବ୍ୟକ୍ତ ବାଣୀ ।
ଗ୍ରାମ ପ୍ରାନ୍ତେ ଗ୍ରାମଦେବତା ଦେଉଳ
ଘୃରି ଦିଗୁଁ ଘେରା ଇଷ୍ଟକ ପ୍ରାଚୀର ।"

ଶାନ୍ତ—ଗାୟତ୍ରୀ ମା !

ଗାୟତ୍ରୀ—ଆମର ଏଇ ମନୋହରପୁରର ଗ୍ରାମଦେବତାଙ୍କ ମନ୍ଦିର କଥା ଲେଖିଛନ୍ତି । ଶୁଣନ୍ତୁ—

ଶାନ୍ତ—ମୋର ମନେ ପଡ଼ୁଛି ଗାୟତ୍ରୀ ! ତାଁର ସେ ବିଜନ ଭଙ୍ଗା ମନ୍ଦିରଟିକୁ ସେ ବଡ଼ ଭଲ ପାଏ ।

ଗାୟତ୍ରୀ—ବୋଉ, ଆପଣଙ୍କ ପୁଅ କବି ବୋଲି ମୋ ଅଜା ତାଙ୍କୁ ଅତି ପ୍ରେମ କରନ୍ତି ।

"ମାଳତୀ ଲତାଟି ପ୍ରାଚୀରର ଗାତେ
ଲତାଇ ଯାଇଛି ତାର ଇଚ୍ଛାମତେ ।
ଅବାରିତ ଅଟେ ଦେବୀଙ୍କ ଦୁଆର
ଭକ୍ତ ପଥିକ କେ କରଇ ଜୁହାର ।
ନିର୍ଜନ ମନ୍ଦିର ନିସ୍ତବ୍ଧ ତା ବେଢ଼ା
ଭାଙ୍ଗି ଯାଇଅଛି ଦେଉଳର ଚୂଡ଼ା ।
କେତେ ଯେ ବସନ୍ତେ କେତେ ଯେ ଶରତେ
ବସିଛି ସେ ବନେ ପ୍ରେମାସକ୍ତ ଚିତ୍ତେ ।
ମୃଦୁ ସମୀରଣ ସଉରଭ ଧରି
ଆନନ୍ଦ ସୁଗନ୍ଧ ପ୍ରାଣେ ଦିଏ ଭରି ।
ଆସନ୍ନ ସନ୍ଧ୍ୟାରେ ଦେବୀଙ୍କ ଦେଉଳେ
ଦେବତା ଖୋଜେ ମୁଁ ଅତି କୌତୂହଳେ ।
ସେ ବିଜନ ବନଦେବୀଙ୍କ ପ୍ରାଙ୍ଗଣେ
ବସିଥାଏ ଚାହିଁ ସୁଦୂର ଗଗନେ ।
ଶେଷ ବିହଙ୍ଗମ ଯାଏ ଉଡ଼ି ନୀଡ଼େ
ପ୍ରଥମ ତାରାଟି ଦିଶେ ଆକାଶରେ ।
ଗଛରୁ ପତର ପଡ଼େ ଯେବେ ଝଡ଼ି
ସର୍ବ ଅବୟବ ଉଠେ ମୋ ଶିହରି ।
ଦିନ ଯାଏ ବର୍ଷ ଯାଏ ମାସ ବର୍ଷ
ଧୀରେ ଆସେ ମନେ କର୍ମର ପରଶ ।

ଚିର ଚିନ୍ତାଶୀଳ ତାପସକୁମାର
ଚରେ ବନେ ବସି ପ୍ରେମ ଅଭିସାର ।
ଯାଇଛି ବସନ୍ତ ଆସିଛି ବରଷା
ଅନ୍ତରେ ଜାଗଇ କି ଅଶେଷ ଆଶା ।
ସେ ଉନ୍ମନା ପ୍ରାଣ ହୋଇଅଛି ସ୍ଥିର,
ହୃଦୟଅଛନ୍ତି ଉଦାର ଗମ୍ଭୀର ।
ଆହେ ମହାକାଳ ! ହେ ମୃତ୍ୟୁଦେବତା,
କହ ଆଜ ତୁମେ ଅଜ୍ଞାତ ବାରତା ।
ସୃଷ୍ଟି ଆଦ୍ୟ ତବ କୋଳେ ବହୁବାର
ହୋଇଛି ବିଲୀନ ଏ ଦେହ ମୋହର ।
ଏ ମୃତ୍ତିକା ତଳେ ଅଛି ତାର ଚିହ୍ନ,
ତବ ମହାଗର୍ଭେ ନ ହୋଇ ବିଲୀନ ।
ଅସମାପ୍ତ କର୍ମ ସାଧିବା ନିମନ୍ତେ,
ଆସିଅଛି ପୁଣି ଏ ମର୍ତ୍ତ୍ୟ ଜଗତେ ।
ବନ୍ଦୀଗୃହେ ତବ ବନ୍ଦନା କରଇ,
ସର୍ବାଙ୍ଗ ମୋହର ଉଠଇ ରୋମାଞ୍ଚି ।
ଝର ଝର ବାରି ଝରେ ଆକାଶରୁ,
ଶମ୍ପାର କମ୍ପନେ ବକ୍ଷ ଦୁରୁଦୁରୁ ।"

ଶାନ୍ତ—(ଶାନ୍ତକଣ୍ଠରେ) ଗାୟତ୍ରୀ ମା, ଶିବୁ କଣ ଲେଖିଛି ! ଏ ତ ସାମାନ୍ୟ ବାଳକର କୌତୁକ ସଙ୍ଗୀତ ନୁହେ !

ଗାୟତ୍ରୀ—ବୋଉ ! ସେ ଯେ ଆପଣଙ୍କର ଏକମାତ୍ର ସନ୍ତାନ !

ଶାନ୍ତ—ଆଉ ଦୁଇ ପଦ ବୋଲ ତ ମା ଗାୟତ୍ରୀ !

ଗାୟତ୍ରୀ—(ଦେହରେ ହାତ ବୁଲେଇ) ବୋଉ ! ଆପଣଙ୍କ ପୁଅକୁ ଦେଖିଲେ ମୋର ବଡ଼ ଲୋଭ ହୁଏ । ସେ ଯଦି ମୋର—

ଶାନ୍ତ—(ସ୍ନେହାବେଶରେ ହସି) (ପିଠିରେ ହାତ ଦେଇ) ସେ ଯେ ତୋର ଗର୍ଭରେ ଅଛି । ଦେଖିବୁ, ଠିକ୍ ସେ ଶିବୁ ପରି ହେବ ।

ଗାୟତ୍ରୀ—ମୋତେ ସେଇ ଆଶୀର୍ବାଦ ଦିଅନ୍ତୁ ବୋଉ ! ମୁଁ ତା କୁ ହିଁ ପୁତ୍ରରୂପେ ଯେପରି ପାଏ ।

ଧୂର୍ଜଟି—(ପ୍ରବେଶ) ଖୁଡ଼ୀ !

ଗାୟତ୍ରୀ—(ଶାନ୍ତଙ୍କ କୋଳ ପାଖକୁ ମଥା ନତ କରି ଉପବେଶନ)

ଶାନ୍ତ—ବାପ ଧୂର୍ଜଟି ! ଆସ, ବସ । ମୋର ଏ ହାତ ଉପବାସୀ ହୋଇ ରହିଛି, ତୁମ ଦେହରେ ଟିକଏ ହାତ ବୁଲାଇଦିଏ ।

ଧୂର୍ଜଟି—(ଚଉକୀ ଟାଣିଆଣି ଉପବେଶନ) ଖୁଡ଼ୀ, ସେଇ ଗୋଟିଏ କଥା ଆଉ ଶେଷ କଥା କହିଦେବାକୁ ଆସିଛି ।

ଶାନ୍ତ—ଶିବୁର ସାଂସାରିକ ଜୀବନର ସମସ୍ତ ଦାୟିତ୍ୱ ଯେ ତୁମର ଉପରେ ରହିଛି ଧୂର୍ଜଟି !

ଧୂର୍ଜଟି—ସେ ଦାୟିତ୍ୱ ନେବାର ଯୋଗ୍ୟତା ମୋର ନାହିଁ ଖୁଡ଼ୀ ! ମୁଁ ଆଜି ଆସିଛି ଗାୟତ୍ରୀ ବିଷୟରେ କହିବ ବୋଲି ।

ଶାନ୍ତ—ଆଦିତ୍ୟ ଆସିଥିଲେ ଗାୟତ୍ରୀକୁ ନେଇଯିବା ଉଦ୍ଦେଶ୍ୟରେ ।

ଧୂର୍ଜଟି—ତୁମେ ତାକୁ ପଠାଇଦିଅ ଖୁଡ଼ୀ !

ଶାନ୍ତ—ମୁଁ ତ ଯଥାସାଧ୍ୟ ଚେଷ୍ଟା କରୁଛି ଧୂର୍ଜଟି ! ଯିବା କଥା ଆରମ୍ଭ ହେଲେ ସେ ଯେ କାନ୍ଦୁଛି ।

ଧୂର୍ଜଟି—ଗାୟତ୍ରୀ ଯିବାକୁ ମନା କରିଦେଲା । ଆଦିତ୍ୟ ତାର ବଡ଼ଭାଇ । ସେ ଯେତେ ବୁଝାଇ କହିଲା—

ଶାନ୍ତ—ମନ କ୍ଷୁଣ୍ଣ କରି ଫେରିଗଲେ ।

ଧୂର୍ଜଟି—କେବଳ ମନ କ୍ଷୁଣ୍ଣ କରିବା କଥା ତ ନୁହେଁ, ଶ୍ୱଶୁର ଏଥିରେ ; ଅପମାନ ବୋଧ କରିଛନ୍ତି । ଗାୟତ୍ରୀର କଥା

ଭାବିଲେ ମୋର ମନ-ପ୍ରାଣ ଆତଙ୍କିତ ହୋଇଉଠେ ।
ତାର ଶରୀର ଏତେ ଦୁର୍ବଳ ହେଲାଣି । ପିଲାଟିଏ ହେବ, ଏ
ସମୟରେ ସେଠି ରହିବା ଉଚିତ ।

ଶାନ୍ତି—ମୁଁ ତ ସେଇ ଇଚ୍ଛା କରୁଛି ଧୂର୍ଜଟି !

ଧୂର୍ଜଟି—ତୁମେ ଯଦି ସେଇ ଇଚ୍ଛା କରୁଥାନ୍ତି, ତୁମର ଅଦ୍ୱୈତ
ଭାଇନା ଆସିଥିଲେ—

ଶାନ୍ତି—(ମନ୍ଦହାସ୍ୟ ପ୍ରକାଶ କରି) ଅଦ୍ୱୈତ ଭାଇନା ବଡ଼ କଷ୍ଟ
ସ୍ୱୀକାର କରି ମୋତେ ନେବେ ବୋଲି ଆସିଥିଲେ । ମୁଁ
ଗଲି ନାହିଁ, ସେ ବିରକ୍ତ ହୋଇଛନ୍ତି କି ନାହିଁ ଜାଣେନା—

ଧୂର୍ଜଟି—କିନ୍ତୁ ମୁଁ ବିରକ୍ତ ହୋଇଛି । ତୁମ ଶରୀର ଅବସ୍ଥା ଯାହା
ହେଲାଣି, ଯାଇଥିଲେ ଦେହ-ମନର ପରିବର୍ତ୍ତନ ଘଟିଥାନ୍ତା !

ଶାନ୍ତି—ଶରୀର ଅବସ୍ଥା ଭଲ ନ ଥିବା ଅନୁମାନ କରି ଯିବାକୁ
ଇଚ୍ଛା କଲି ନାହିଁ ଧୂର୍ଜଟି ! ଏ ଘରେ ଯେ ତୁମ ଜନକଙ୍କର
ପଦଧୂଳି ରହିଛି । ଏଇ ଘରେ ତୁମେ ମୋର ଶେଷଶଯ୍ୟାଟି
ରଚିଦେବ ।

ଧୂର୍ଜଟି—ତୁମେ ତ ବଡ଼ ମର୍ମସ୍ପର୍ଶୀ କଥା କହିଲଣି ଝିଅ୍ରୀ ! ସେ
ସମ୍ବନ୍ଧରେ ମୁଁ ଆଉ କଣ କହିବ ? କିନ୍ତୁ ଗାୟତ୍ରୀ ତାର ଏ
ସଙ୍କଟ ସମୟରେ ସେଠି ରହିବା ଉଚିତ କି ନୁହେଁ, ତୁମେ ହିଁ
ତାହା ବିଚାର କର ।

ଗାୟତ୍ରୀ—(ଉଠି ଧୂର୍ଜଟିଙ୍କ ପଦସ୍ପର୍ଶ କରି) ଧୂର୍ଜଟି ଭାଇ !
ବାଲ୍ୟକୈଶୋରରେ ତୁମକୁ ମୁଁ ଭଉଣୀ ରୂପେ ପାଇଥିଲି ।
ମୋର ସ୍ନେହ-ଶ୍ରଦ୍ଧା ଦେଇ ତୁମ ସହିତ କେତେ ଖେଳିଛି,
ହସିଛି । ତୁମେ ହିଁ ମୋର ସେ ପିଲାମନକୁ ବୁଢ଼ା କରି-
ଦେଇଛ । ତୁମେ ମୋର ସ୍ୱାମୀଙ୍କ ଭକ୍ତିଭାଜନ ଅଗ୍ରଜ।

ତୁମ ସମ୍ମୁଖରେ ଠିଆ ହୋଇ ତୁମ ମୁହଁକୁ ଚାହିଁ ମୋର ମନର ଗୋପନ କଥା କପରି କହିବି ? କିନ୍ତୁ କହିବାକୁ ଯେ ମୁଁ ବାଧ୍ୟ ହେଉଛି ଧୂର୍ଜଟି ଭାଇ ! ସେଇ ସେଦିନ କି ଶୁଭକ୍ଷଣରେ ତୁମେ ତୁମର ଭାଇଙ୍କୁ ନେଇ ମୋ ସମ୍ମୁଖରେ ଠିଆ କରାଇ ଦେଇଥିଲ—

ଧୂର୍ଜଟି—ମୁଁ ଜାଣେ ଗାୟତ୍ରୀ ! ସେଇ ଅବଧି ତୁ ତୋର ଜୀବନର ସମସ୍ତ ପିଲାଖେଳ ଭୁଲିଯାଇଛୁ । କିନ୍ତୁ ଅସମୟରେ—

ଗାୟତ୍ରୀ—ଅସମୟ ହିଁ ଯେ ଜୀବନର ମହାନ୍ ସମୟ ଧୂର୍ଜଟି ଭାଇ ! ତୁମେ ମୋ ନିମନ୍ତେ ଯାହା କରିଛ, ସେ କଥା ଭାବିଲେ ମୋର କୃତଜ୍ଞତାର ଅଶ୍ରୁ ଧାର ଧାର ହୋଇ ବହିଯାଏ । ତୁମେ ଭାବିଛ ଯେ ମୁଁ ମୋର ସେ ଖେଳଘରକୁ ଯାଇ ଦୁଃଖ ଭୁଲିଯିବି । କିନ୍ତୁ ତୁମର ସେ ହସି ଖେଳ ଦିନ କଟାଇବା ଗାୟତ୍ରୀ ଆଉ ନାହିଁ । ସେ ମରି ପାଉଁଶ ହେଲାଣି । ଏବେ ଯେଉଁ ଗାୟତ୍ରୀକୁ ତୁମେ ଦେଖୁଛ, ସେ ଗଭୀର ଦୁଃଖ ଭିତରେ ହିଁ ଅନୁଭବ କରୁଛି ଆନନ୍ଦ । ସେ ଆନନ୍ଦମୟ ଅନୁଭୂତିର କଥା ତ ସଂକ୍ଷେପରେ କହିହେବ ନାହିଁ—

ଶାନ୍ତ—(ପରିଶ୍ରାନ୍ତ ଭାବରେ) ମୁଁ ଆଶ୍ଚର୍ଯ୍ୟ ହୋଇ ଭାବୁଛି ଧୂର୍ଜଟି, ଏତେ ବଡ଼ ନୂତନ ଅନୁଭୂତି ଗାୟତ୍ରୀ ମା'ର ମନକୁ ସ୍ପର୍ଶ କଲା ଯେଉଁ ଶୁଭକ୍ଷଣରେ—

ଗାୟତ୍ରୀ—ଏ ଘରର ପ୍ରତ୍ୟେକ ଧୂଳିକଣାଟି ଯେ ମୋର ହୃଦୟ-ଧନ । ଏ ଘରୁ ମୁହୂର୍ତ୍ତେ ଅନ୍ତର ହେବା କଥା ଭାବିଲେ ଯେ ମୋର ପ୍ରାଣ ଆତଙ୍କିତ ହୋଇଉଠୁଛି । ତୁମେ ହିଁ ମୋତେ ଆଶୀର୍ବାଦ ଦିଅ, ମୋର ସେଇ ଶିଶୁକାଳରୁ ଆଜି

ପର୍ଯ୍ୟନ୍ତ ଯେତେ ସକାଳ ସନ୍ଧ୍ୟା ଅଶାନ୍ତରେ ମିଶିଯାଉଛି, ସବୁଗୁଡ଼ିକ ମୁହୂର୍ତ୍ତ ଆଜ ସାର୍ଥକତାରେ ଭରିଯାଉ । ସେଇ ଶିଶୁକାଳରୁ ହିଁ ମୁଁ ତାଙ୍କର ସେବିକା ହୋଇ, ଶିଷ୍ୟା ହୋଇ ରହିଥିଲି ବୋଲି ଭାବିବାକୁ ମତେ ଶକ୍ତି ଦିଅ ଧୂର୍ଜଟି ଭାଇ !

ଧୂର୍ଜଟି—କିନ୍ତୁ ଗାୟତ୍ରୀ, ତୋର ଏସବୁ ଯେ କଳ୍ପନା !

ଗାୟତ୍ରୀ—( ଆବେଗରେ ) କଳ୍ପନା ନୁହେଁ ଧୂର୍ଜଟି ଭାଇ ! ସମ୍ପୂର୍ଣ୍ଣ ସତ୍ୟ ! ପରମ ସତ୍ୟ ! ପିଲାଟି ଦିନରୁ ମନରେ ଯେଉଁ କଳ୍ପନା ଥିଲା ଶିବତୁଲ୍ୟ ସ୍ୱାମୀ ପାଇବି ବୋଲି, ଆଜ ମୋର ମନେ ହେଉଛି, ସାକ୍ଷାତ୍ ଶିବଙ୍କୁ ସ୍ୱାମୀରୂପେ ପାଇଛି । ମୋ ମନର ଏକାନ୍ତ ଗୋପନ ବାର୍ତ୍ତା ଧୂର୍ଜଟି ଭାଇ ! ମୋର ଦିବା ରାତିର ସମସ୍ତ ଅବକାଶ ଯେ ତାଙ୍କର ଧ୍ୟାନରେ ଯାଉଛି—

ଧୂର୍ଜଟି—( ବିଷାଦ ଭାବରେ ) ତାହାହେଲେ ଶିବ ତୋତେ ଏ ଘର ନ ଛାଡ଼ିବା ନିମନ୍ତେ ଆଦେଶ ଦେଇ—

ଗାୟତ୍ରୀ—ସେ ତ ମୋତେ କୌଣସି ଆଦେଶ ଦେଇ ନାହାନ୍ତି । ସେ ଜାଣନ୍ତି, ମୁଁ ବୋଉଙ୍କୁ ଛାଡ଼ି, ଏ ଘର ଛାଡ଼ି ପାଦେ ମଧ୍ୟ ଅଗ୍ରସର ହୋଇପାରିବି ନାହିଁ ।

ଧୂର୍ଜଟି—ମାନସିକ ଉତ୍ତେଜନାରେ ବଡ ଶ୍ରାନ୍ତ ହୋଇଗଲୁଣି ।

ଗାୟତ୍ରୀ—ଶ୍ରାନ୍ତ ମୋର ଆସି ନାହିଁ । ତାଙ୍କ କଥା କହିଲା ବେଳେ ମୋର ମନେ ହେଉଛି ମୁଁ ନିଜେ ବୁଝିପାରୁ ନାହିଁ, ସେ କେଉଁ ଅଶୁଣା ଛନ୍ଦରେ ମୋର କଣ୍ଠ ତାଙ୍କର ବନ୍ଦନା ଗାଇଯାଉଛି । ବୋଉ ଏଠି ବସିଛନ୍ତି, ତାଙ୍କ ଗଳାର ଗାୟତ୍ରୀ ଡାକଟି ଶୁଣିଲେ ମୋର ମନେ ହେଉଛି ସେ ହିଁ ଏଠି ବସି ମୋତେ ସୋହାଗଭରା ସ୍ୱରରେ ଡାକୁଛନ୍ତି ।

ଶାନ୍ତ— ( ଉଠିପଡ଼ି ଆବେଗରେ ) ଗାୟତ୍ରୀ ମା ମୋର ! ତୋର ସ୍ୱାମୀ ଆଜ—

ଗାୟତ୍ରୀ—ହଁ ବୋଉ ! ଆଉ ଧୂର୍ଜଟି ଭାଇ, ଆଜ ଲଜ୍ଜା ଭୁଲି ତୁମ ସମ୍ମୁଖରେ ସବୁ କଥା ପ୍ରକାଶ କରିଦେଉଛି । ଜୀବନରେ ଆଉ ହୁଏତ ମୋତେ ସୁଯୋଗ ମିଳିବ ନାହିଁ । ମୋର ସ୍ୱାମୀ ଯେ ଦେଶ-ଦେବତାର ପଦତଳେ ଆପଣାକୁ ପୁଷ୍ପାଞ୍ଜଳି କରି ଅର୍ପଣ କରି ଦେଇଛନ୍ତି, ଏ ଗୌରବ-ଗାଥା କେଉଁ ଭାଷା ଦେଇ ପ୍ରକାଶ କରିବ ? ସେ ଯେ ଏ ଘରେ ଅଳ୍ପ କେତୋଟି ନରନାରୀଙ୍କ ହୃଦୟ ଅଧିକାର କରି ରହିଥିଲେ, କିନ୍ତୁ ଆଜି ସମଗ୍ର ଦେଶର ନରନାରୀଙ୍କ ହୃଦୟର ଅଧୀଶ୍ୱର ହୋଇ ସୁଦୂର ବନ୍ଦୀଗୃହରେ ବସିଛନ୍ତି । ଏଇ ବଡ଼ ହେବା, ପୂଜ୍ୟ ହେବା ଏ କି ଆକସ୍ମିକ ଘଟଣା ? ଏ ଯେ ଜନ୍ମଜନ୍ମାନ୍ତରର ତପସ୍ୟା । ତାଙ୍କର ଜ୍ୟୋତିର୍ମୟ ସ୍ମୃତି ରହିଛି ଏ ଘରେ । ଏ ଘରର ପ୍ରତ୍ୟେକ କୋଣରେ ତାଙ୍କର ପୂଜାର ଆସନ ସଜେଇ ରଖିଛି ମୁଁ । ତୁମେ ମୋତେ ଆଜି ଲଜ୍ଜା ସଙ୍କୋଚର ସକଳ ପ୍ରକାର ସଂକୀର୍ଣ୍ଣ ସୀମା ଭିତରୁ ଉଠାଇନେଇ ଠିଆ କରାଇଦେଇଛ ଆତ୍ମପ୍ରକାଶର ପ୍ରଶସ୍ତ କ୍ଷେତ୍ରରେ । ମୋତେ କ୍ଷମା କର ଧୂର୍ଜଟି ଭାଇ, ମୋତେ କ୍ଷମା କର ।

( ପ୍ରସ୍ଥାନ )

ଧୂର୍ଜଟି— ( ସ୍ୱଗତ ) ଗୌରୀ ଆଉ ଗାୟତ୍ରୀ ଦୁଇ ଭଉଣୀ, କିନ୍ତୁ ଦୁହିଁଙ୍କ ଭିତରେ ଏତେ ପ୍ରଭେଦ ଯେ ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି । ଗାୟତ୍ରୀ ଏ ଗଭୀର ଆଧ୍ୟାତ୍ମିକ ଜ୍ଞାନ ପାଇଲା କେଉଁଠାରୁ ? ଗୌରୀ, ମୋ ସ୍ତ୍ରୀ, ଯଦି ଏପରି

ଗୋଟାଏ ଘରେ ଏଇ ଅବସ୍ଥାରେ ଥାନ୍ତା, ଡାକବା ପୂର୍ବରୁ ବାପଘରକୁ ଚାଲି ଯାଇଥାନ୍ତା ।

ଶାନ୍ତ—ଧୂର୍ଜଟି, ସବୁ ତ ଶୁଣିଲ ବାପ ! ଆଉ ଭାବୁଛ କଣ ? ଏଇକ୍ଷଣି କହିବ ଯେ କେବଳ ମୋହର ପ୍ରଭାବରୁ ସବୁ ଘଟୁଛି !

ଧୂର୍ଜଟି—ସେ କଥାର ଆଉ ପୁନରାବୃତ୍ତି କରି କିଛି ଲାଭ ନାହିଁ ଖୁଡ଼ୀ ! ଉପସ୍ଥିତ ଅବସ୍ଥା ଯାହା, ସେଥିରେ ହିଁ ବ୍ୟଥିତ ହେବାକୁ ପଡ଼ୁଛି ।

ଶାନ୍ତ—ହଁ ବାପ, ମୋର ସ୍ୱଭାବ ଏପରି ଯେ ମୁଁ ସବୁ ନିନ୍ଦା ମଥାପାତି ଗ୍ରହଣ କରିଆସିଛି । ନିନ୍ଦାକୁ ଯଦି ଭୂଷଣ କରି ନ ଥାନ୍ତି, ଭଗବାନ୍ ମୋତେ ଗାୟତ୍ରୀ ପରି ପୁତ୍ରବଧୂ ଦେଇ ନ ଥାନ୍ତେ ।

ଧୂର୍ଜଟି—ମୁଁ ଯାଉଛି ଖୁଡ଼ୀ, ଆଉ ତ କିଛି କହିବାକୁ ନାହିଁ । ମୋର ବଚନ ଗଠନର ଗର୍ବ ଖର୍ବ କରିଦେଇଛି ମୋହର ଶ୍ୟାଳିକା ।

ଶାନ୍ତ—ସବୁ ଅନର୍ଥର ମୂଳ ବୋଲି ଖୁଡ଼ୀକୁ ଭୁଲିଯିବ ନାହିଁ ।

ଗାୟତ୍ରୀ—(ପ୍ରବେଶ) ଧୂର୍ଜଟି ଭାଇ ! ଆଜି ଚା ଖାଇ ଯିବ । ବୋଉଙ୍କର ମ୍ୟାଲେରିଆ ହେଉଛି ବୋଲି ତାଙ୍କୁ ଚା' ଟିକିଏ ଟିକିଏ ଦେଉଛି । ବୋଉ, ( ଦେହରେ ହାତ ବୁଲାଇ ) ଆପଣଙ୍କ ଦେହ ଗରମ ହୋଇଗଲାଣି । ଚାଲନ୍ତୁ, ଚା' ଟିକିଏ ଖାଇ ଶୋଇପଡ଼ିବେ !

( ହାତ ଧରି ପ୍ରସ୍ଥାନ )

ଧୂର୍ଜଟି—କି ସୁନ୍ଦର କଥା କହୁଛନ୍ତି ଗାୟତ୍ରୀଦେବୀ ! ଶୁଣିଲେ କେବଳ ଶୁଣିବାକୁ ଇଚ୍ଛା ହେଉଛି । ପର୍ବତ ତୁଲ୍ୟ ଅଚଳ ଅଟଳ ମନୋବୃତ୍ତି । ଏମିତି ପତ୍ନୀ ଯାହାର, ତା ଜୀବନ ଧନ୍ୟ ।

ନେପଥ୍ୟ—ଧୂର୍ଜଟି ! ଆସ ବାପ, ଚା'ଟା ଥଣ୍ଡା ହୋଇଯିବ ।

( ଧୂର୍ଜଟିର ପ୍ରସ୍ଥାନ )

—ː୦—

# ତୃତୀୟ ଅଙ୍କ

## ତୃତୀୟ ଦୃଶ୍ୟ

ସ୍ଥାନ—ରାସ୍ତା

ଚନ୍ଦ୍ର— ( ପ୍ରବେଶ ) ଗଲା ! ଗାଁର ଶ୍ରୀ ହଜିଗଲା । ସଦେଇ ଗଲାଠୁଁ ମୋ ତୁଣ୍ଡରେ ତୁଣ୍ଡି ବାନ୍ଧି ଦେଇଛି । ଯାହାହେଉ, ସଦେଇଟା ବୁଝିଥିଲା ଭଲ । ଜୀବନଟା ତାର ଧନ୍ୟ ହୋଇଗଲା । ଛାପା ଅକ୍ଷରରେ ତା ନାଁ ବାହାରି ପଡ଼ିଲା—ଶିବସୁନ୍ଦରଙ୍କ ବିଦ୍ୟାପୀଠର ଜଣେ ପ୍ରଧାନ କର୍ମୀଙ୍କ ଜେଲ ହୋଇଗଲା ବୋଲି । ସେ ଧନ୍ୟ ହେଲା ଯେ ମୋର କ'ଣ ଲାଭ ହେଲା ?

ଗଦେଇ—(ପ୍ରବେଶ)

ଚନ୍ଦ୍ର—ଗଦାଧର କରେ, ଆସ ଆସ ।

ଗଦେଇ—ଏଇକ୍ଷଣି ପାନ ମାଗିବେ ।

ଚନ୍ଦ୍ର—(ଅଗ୍ରସର ହୋଇ) ଆଣ ମ ପାନ ଖଣ୍ଡେ ।

ଗଦେଇ—ପାନଫାନ ମୋ ପାଖରେ ନାହିଁ ମଉସା, ସଦେଇ ଭାଇନାଠୁ ପାନ ନେବା ଢଙ୍ଗର ଅଭ୍ୟାସ ହୋଇ ଯାଇଥିଲା । ଏବେ ସେଇ ସୁବିଧାଟା—

ଚନ୍ଦ—ସେ ସୁବିଧା ଖୋଜିଲେ ଆଉ ମିଳିବ କିରେ ଗଦେଇ ! ସେ ତ ଖାଲି ଯାଇ ନାହିଁ, ମୋତେ ଅଧମରା କରି ଏଠି ଫିଙ୍ଗିଦେଇ ଯାଇଛି । (ପାନ ଖୋଜି) ଡବା ତ ରଖିନୁ, ଗାମୁଛାରେ ବନ୍ଧା ହୋଇଛି କି (ଖୋଲି ନେବା) (ପାନ ଖାଇ) ବୁଝିଲୁ ଗଦେଇ, ଏ ଗାଁରେ ଆଉ ରହି ହେବ ନାହିଁ ।

ଗଦେଇ—(ମସ୍ତକ ସଞ୍ଚାଳନ ସହ) ଆଦୌ ରହି ହେବ ନାହିଁ । ଜମାରୁ ରହିହେବ ନାହିଁ । ଆଜିର ପରି ମେଘୁଆ ଦିନରେ ତାସ ଖେଳିବାକୁ ଗାଁରେ ଯୋଡ଼ି ମିଳୁ ନାହାନ୍ତି । ବୁଝିଲ ମଉସା, ଭାଇଁପାର ଭାଇକୁ ଯାହା କହନ୍ତି, ସେଇ କଥାଟା ମୁହଁରୁ ବାହାରି ପଡ଼ୁଥିଲା । ଏଇପରି ମେଘୁଆ ଦିନରେ ସକାଳ ବେଳା ପହରକରେ ସୁନ୍ଦର—

ଚନ୍ଦ—ସୁଖାଦ୍ୟ ସୁମିଷ୍ଟ ଆହାରଟିଏ କରି ଟିକିଏ ଗଡ଼ପଡ଼ ହେଇ ଘରୁ ବାହାରିଲି ବେଳକୁ ସଦେଇ ସହିତ ଦେଖା ହୋଇଯାଏ । ତାପରେ ଯେଉଁ ପରନିନ୍ଦାକୁ ହୁଏବ, ସଦେଇର ଡବାକ ପାନ ଶେଷ ହେବା ଯାଏ ମୁଁ ମୋର ସେଇ ନନ୍ଦା ପୁରାଣରୁ କେତେ ଅଧ୍ୟାୟ ଶୁଣାଇଦିଏ ।

ଗଦେଇ—(ଗାମୁଛା ଟାଣିନେଇ) କହ କହ ମୋର ଦି'ଖଣ୍ଡ ପାନ ଶେଷ କରିଦେଲଣି । ଗାମୁଛାଟାରେ ଛେପଗୁଡ଼ାକ ପୋଛୁଲଣି ।

ଚନ୍ଦ—(ହାତ ଧରି ବସେଇଦେଇ) କଥାଗୁଡ଼ାକ ତୋହିରେ ଭରି ହୋଇ ଉଛୁଳି ଉଠୁଛି । ଦିନ ସରୁ ନାହିଁ କି—

ଗଦେଇ—ବେଳ ବୁଡ଼ୁ ନାହିଁ । ଚଷାପିଲ ହେଲେ କଣ ହେଲା, ଭଜୁଆ ଟା ଥିଲା ଭଲ ଖେଳାଳୀ ।

ଚନ୍ଦ—ଭଜରାମ ପ୍ରଧାନ ବୋଲି ବଡ଼ ବଡ଼ ଅକ୍ଷରରେ ତା ନାଁ ବାହାରି ପଡ଼ିଲା । ସତେଇ ଗଲାଠୁ ମୋ ପ୍ରାଣ କାନ୍ଦୁଛି । ଯଶୋଦା କେତେବେ କେଶବ କୋଇଲି ଗାଇଥିଲେ, ମୁଁ ଏବେ ସତେଇ କୋଇଲି ଗାଇବି ।

ଗଦେଇ—ହଁ ହେ, ସତେଇ କୋଇଲି ଗାଇବ । ତାସ ବାଜିଏ ଖେଳିବି ବୋଲି ଖୋଜୁଛି ଯେ ଗୋଟିକରି ହେଲେ ଦର୍ଶନ ନାହିଁ । ଧନେଇଁ ଟା ମନ୍ଦ ଖେଳୁ ନ'ଥିଲା । ସେ ବି ତ ଗଲା । ଆଜି ଗାଁରେ ଦି ଗୁରି ଟା ବୁଢ଼ା ଯାହା ଅଛନ୍ତି । କାହା ପୁଅ, କାହା ପୁତୁରା, କାହା ଭାଇ ଜେଲକୁ ଯାଇଛନ୍ତି । ସେ ଯେଉଁ 'ସମାଜ' ନା କି କାଗଜ ଧରି ବସି ପଢ଼ୁଛନ୍ତି, ସେ ଗୋଟାଏ ଶୋକ ସଭା ଭୁଲୁଛି । ବେଣୁ ମିଶ୍ର ବୁଢ଼ା ଟା ଭଲ ଖେଳେ । ପାକୁଆ ପାଟିରୁ ପାନରସ ଝରି ପଡ଼ୁଥିବ ବନ୍ଦୁ ବନ୍ଦୁ ହୋଇ—ସେ କି ଧ୍ୟାନ ବକମରେ ତାସ ପିଟନ୍ତି ପଟାସ୍ ପଟାସ୍ । କେହି କାହା ତାସକୁ ଅନେଇଁଦେଲା ତ ସୃଷ୍ଟି ଟା ପ୍ରଳୟ ହୋଇ-ଗଲା ପରି ଲଗିଯିବେ । ସେ ଉତ୍ସାହ ଆନନ୍ଦ—

ଚନ୍ଦ—(ପାନ ନେଇ) ଗଲା, ଗଲା, ସବୁ ଗଲା ରେ ଗଦେଇ, କି ଗାନ୍ଧି କେଉଁ ଆଡ଼ୁ ସହଯୋଗ ଦୋଳନ ଲଗିଲା ।

ଗଦେଇ—ଏଇ ବଦମା (ହସି ହସି) ବୁଦ୍ଧି ନେଇ କୋଇଲି ଗାଇବ ମଉସା !

ଚନ୍ଦ—ହଇ ରେ ଗଦେଇ, ଶୁଣ୍ ମ, ହସୁଛୁ କେତେ ? ସହଯୋଗ ଦୋଳନ ବୋଇଲେ ଅର୍ଥ କଣ ରେ ?

ଗଦେଇ—ଆଜ୍ଞ (ହସି) କ ତାସ ଖେଳିବ ମଉସା, ମୋ ପେଟ ଫଟାଇଦେଲ ।

ଚନ୍ଦ—ଲୋକରେ କାହାକୁ ପଚାରି ପାରୁ ନାହିଁ । ତୋର ମୋର କଥା ମ ! ଏ ଗୋଟାଏ ଚ୍ଛେଡ଼ରାଟେ । ସବେଇ କେବେ ହସେ ନାହିଁ । ମୁହିଁ ଗମ୍ଭୀର କରି ଟପେ ପଦେ ବାକ୍ୟବାଣ ବିନ୍ଧିବ ଯେ ଏକାଥରକେ ହାଡ଼ ଚଞ୍ଚଳ କଣ ହୋଇଯିବ । ମୁଁ ସେପରି ଗୋଟାଏ ଅଲଜୁକ ବୋକ—ଛାଡ଼ ସେ କଥା, ଶୁଣ୍ ମ ।

ଗଦେଇ—ବାଜ ମଉସା ଘରେ ଥିବେ—

ଚନ୍ଦ—ଶୁଣ୍ ମ ! ଖେଳଟା କଣ କେଉଁଆଡ଼େ ପଳାଇଯାଉଛୁ କ ?

ଗଦେଇ—ସେଇ କଥା ପଚାରୁଛୁ । ଦୋଳନ ନାହିଁ ମଉସା, ଆନ୍ଦୋଳନ । ସହଯୋଗ ଦୋଳନ ନୁହେଁ, ଅସହଯୋଗ ଆନ୍ଦୋଳନ ।

ଚନ୍ଦ— ନାହିଁ ମ, ଆଉ ଗୋଟାଏ କଥା ।

ଗଦେଇ—ତୁମେ ଗୋଟାକ ଉପରେ ଆଉ ଗୋଟାଏ କରି ଚଗ୍ଭରି-ଯିବ—

ଚନ୍ଦ—(ହାତ ଧରି) ହଇ ରେ ଗଦେଇ, ସେଇ କଥା ମ ।

ଗଦେଇ—କେଉଁ କଥା କହୁନ, ଏତେ ଲମ୍ବା ଭୂମିକା କରି କହିବ ଯେ ଶୁଣିବାକୁ ମୋର ସମୟ ନାହିଁ ।

ଚନ୍ଦ—ଏଇ ମ, ବରକ୍ତ ହେଉଛୁ କାହିଁକି ? ତାଙ୍କର କଥା ମ, ହଇ ରେ ଗଦେଇ ! ପୁଅକୁ ତ ଜେଲକୁ ପଠାଇଦେଲ, ଭଉକାରିଟେ ତ ଘରେ ଥିଲ—

ଗଦେଇ—ଥିଲୁ ତ ଗଲୁ ତ କର କର କହିଲଗିଛ । କାହା କଥା ତୁମେ ପଚାରୁଛ ?

ଚନ୍ଦ—ଶୁଣ ମ, ତୁ ଟିକଏ ଧୀର ସ୍ଥିର ହୋଇ ଶୁଣିଲେ କହିବ ନା—ସେଇ ମ ଯାହା ଯୋଗୁ ଆମ ଗାଁ ଆଜ ଜନଶୂନ୍ୟ । ହଇରେ, ପୂର୍ବ ଖଣ୍ଡ ଛୁଡ଼ ଏବେ ସେ ଇସ୍କୁଲ୍ ଜଗୁଆଳ ବୁଢ଼ା ପଠାଣ ଆସି ତାଙ୍କ ଘରେ ରହିଲଣି ?

ଗଦେଇ—ବୁଢ଼ାଟା ପଡ଼ଗଲ, ଗୋଡ଼ ଭାଙ୍ଗି ଯାଇଛି । ତାଙ୍କ ଘରେ ରହିବ ନାହିଁ ତ ଯିବ କେଉଁଠିକ ?

ଚନ୍ଦ—ଗୋଡ଼ ଭାଙ୍ଗୁ କ ହାତ ଭାଙ୍ଗୁ, ଯେତେ ହେଲେ ମଧ ମ୍ଲେଚ୍ଛ ତ । ତୋ ବୋଉ ଏପର କରନ୍ତା ନା ! ପଠାଣ ଦାଣ୍ଡରେ ଗୃଲଗଲେ ଗୋବର ପାଣି ଦଅନ୍ତେ । ଆମ ଘରର ଜାତି, ଧର୍ମ, କର୍ମ ବୋଲ ତ ଆମର ମାୟାମମତା ଅଛି ।

ଗଦେଇ—ମାୟାମମତାର ଅର୍ଥ କଣ ମଉସା ! କେତେ କଥା ତୁମେ ଶିଖିଗଲଣି ।

ଚନ୍ଦ—(ଆଉ ଖଣ୍ଡେ ପାନ ନେଇ ) ତାସ ପଛକେ ତୋ ସାଙ୍ଗରେ ଖେଳବ, ମୋ କଥା ଆଗେ ଶୁଣ୍ ।

ଗଦେଇ—ତୁମେ ଛ ମଉସା ମନୁଷ୍ୟ ଭଡ଼ଆଣି କଥା ଶୁଣାଇବା ମନୁଷ୍ୟ ।

ଚନ୍ଦ—ପେଟ ଫାମ୍ପି ରହିଛି ରେ ଗଦେଇ ! ସବୁଗୁଡ଼ାକ କଥା ଉଦ୍‌ଗାର ଉଠୁଛି । ତୁ ନ ଶୁଣିଲେ ମୋର ଆଉ ଅନ୍ୟ ଉପାୟ ନାହିଁ ଏ ଭାର ଲଘୁ କରିବାକୁ । ଶୁଣ୍, ଯେତେହେଲେ ମଧ୍ୟ ଆମେ ହେଲେ ବ୍ରାହ୍ମଣ—

ଗଦେଇ—(ଗାମୁଛା ଦେଖି) ହଁ ହେ, କେତେ ବ୍ରାହ୍ମଣ ବ୍ରାହ୍ମଣ ବୋଲି କହୁହେଉଛ ! ବଳାତ୍କାରରେ ମୋର ପାନଗୁଡ଼ିକ—

ଚନ୍ଦ୍ର—ଖାଇଦେଲି । ଏଥିରେ କଣ ହୋଇଗଲା ! ତୁ ଖାଆନ୍ତୁ, ନ ହେଲା ମୁଁ ଖାଇଲି । ପୂଜୁରୀ ଖାଇଥାନ୍ତା, ମଉସା ଖାଇଲା !

ଗଦେଇ—ତୁମେ ଯିବ ଯଦି ଚାଲ, ମୁଁ ଯାଉଛି ବାଜି ମଉସାଙ୍କୁ ଡାକି ଆଣୁଛି । ବୃଥା ଗପ କରି ସମୟ ନଷ୍ଟ ହେଉଛି ।

ଚନ୍ଦ୍ର—ତାସ ଖେଳଟା ନ ହେଲେ ଆଉ ଗୋଟାଏ ବଡ଼ କାର୍ଯ୍ୟ ! କଥାଟା ଆଗେ ଶୁଣ୍ । ( ହାତ ନ ଛାଡ଼ି ) ହଇରେ ବାପ ଗଦେଇ—

ଗଦେଇ—(ମୁହଁ ଫେରାଇ) କଣ କହିବ କହ, କାତୁରୁମାଚୁରୁ କରି ଛେପ ବାହାର କରୁଛ ।

ଚନ୍ଦ୍ର—( ଗଦେଇ ଗାମୁଛାରେ ପୋଛି ) ତୋ ମନ ତ ଛନଛନ ହେଉଛି, ଶୁଣିଲେ କହିବ ନା ! ସେଇ ମ, ସେଇ କଥା, ଆମ ବ୍ରାହ୍ମଣ ଘର ଖାଉ ମାଉ—

ଗଦେଇ—ଆହା, (ବଦ୍ରୂପ କରି) ତୁମର ଯେଉଁ ଖାଉ ମାଉ ପୂର୍ବ ଖାଉ, ପଶ୍ଚିମ ଖାଉ । ମଉସା, ତୁମର ବୁଢ଼ାବାପା କ ଖାଉରେ ଥିଲେ ମୁଁ ଜାଣି ନାହିଁ । ତୁମେ ଯେଉଁ ଖାଉ ମାଉରେ ଅଛ, ସେ କଥା ତୁମେ ଜାଣ । ମୋ ବାପାଙ୍କର ମାଉ ଥିଲା ତାଙ୍କର ନିଜ ଶରୀରଟିର ଐକାନ୍ତିକ ସେବା । କଣ ଖାଇଲେ ଆହାରଟି ଜୀର୍ଣ୍ଣ ହେବ, କେଉଁ ଔଷଧଟିରେ ଦେହର ଓ ପେଟର ନାଡ଼ୀଟି ଗାଢ଼ ହେବ, ଅଫିମ ସହିତ ଜାଟକୋଷ ମୋଦକର ମିଶ୍ରଣ ଭଲ ହେବ କି ନାହିଁ ? ଇତ୍ୟାଦି—

ଚନ୍ଦ—ଆହା କି ମନୁଷ୍ୟ ଥିଲେ ସେ, ଖାଇବା କଥାରେ ତାଙ୍କର ଏତେ ଯତ୍ନ !

ଗଦେଇ—ତୁମେ ସେ କଥା ଚିନ୍ତା କରୁଥାଅ ମଉସା', ମୁଁ ଯାଉଛି, ଟେଣେ ବାଜା ମଉସାକୁ ଡାକିବି ।

ଚନ୍ଦ—ଆଜିକାଲିର ଟୋକାଙ୍କୁ ଆଉ ପାରି ହେବ ନାହିଁ । ଗୁରୁଜନଙ୍କର ଦୋଷ ବାଛିବାକୁ ଏମାନେ ସାହସ କଲେଣି ! ଏ ଗାଁର ପୁଣ୍ୟବଳ କ୍ଷୟ ହୋଇଗଲା । ସଦେଇଟା ଥିଲେ କଥାଟା ବୁଝନ୍ତା । (ପ୍ରସ୍ଥାନ)

---

# ତୃତୀୟ ଅଙ୍କ

## ଚତୁର୍ଥ ଦୃଶ୍ୟ

ସ୍ଥାନ—ବିଶ୍ୱମ୍ଭରଙ୍କ ସରକାରୀ ବାସଭବନ

ବିଶ୍ୱମ୍ଭର—( ପ୍ରବେଶ ) (ଶଠି ପଢ଼ି ) ଗୌରୀ ବୋଉ ! ଗୌରୀ ବୋଉ !

ବୈଦ୍ଧଣୀ—( ପ୍ରବେଶ ) ( ସ୍ୱଗତ ) କଣ କରିବି, କାହାକୁ ସମ୍ଭାଳିବି ? ବାପା କହୁଛନ୍ତି ଶିବ ମହତ୍ କାର୍ଯ୍ୟ କରୁଛି—

ବିଶ୍ୱମ୍ଭର—ଗାପୂଣୀ ମୋତେ ଅପମାନ ଦେଇଛି ।

ବୈଦ୍ଧଣୀ—ଗାପୂଣୀ ! ଏଁ ଗାପୂଣୀ , ତୁମକୁ ଅପମାନ ଦେଇଛି !

ବିଶ୍ୱମ୍ଭର—କେବଳ ଅପମାନ ନୁହେଁ, ଭଗ୍ନୀଙ୍କର ଅପମାନ ହୋଇଛି।
ଶୀଘ୍ର ହୋଉ, ତୁମକୁ ମୁଁ କହି ରଖୁଛି—

ଯୋହିଣୀ—ମୋର ତ ବିଶ୍ୱାସ ହେଉ ନାହିଁ।

ବିଶ୍ୱମ୍ଭର—ଏଇ ଦେଖ ଧୂର୍ଜଟିର ଚିଠି। ଆଦିତ୍ୟକୁ ପଠାଇଥିଲି, ମନା କରିଦେଲା। ଧୂର୍ଜଟି ପୁଣି ସ୍ୱତଃପ୍ରବୃତ୍ତ ହୋଇ ଯାଇଥିଲା। ଅଜ୍ଞାନ ବାଳିକାର ଏତେଦୂର ସ୍ପର୍ଦ୍ଧା! କହୁଛି, ସେ ଭଙ୍ଗା କୁଡ଼ିଆରେ ପତିଙ୍କର ଚରଣଧୂଳି ରହିଛି, ସେ ସେଥିରୁ ପଦେ ମଧ୍ୟ ଘୁଞ୍ଚିବ ନାହିଁ। ଆଶା କରିଥିଲି—

ଯୋହିଣୀ—( ରୋଦନ କରି ) ବଡ଼ ଆଶାରେ ଅପେକ୍ଷା କରି ରହିଥିଲି। କଣ ଖାଇ ରହିଥିବ! କେଡ଼େ ସୁକୁମାର ଅଲିଅଳି ହୋଇ ବଢ଼ିଥିଲା!

ବିଶ୍ୱମ୍ଭର—ବଡ଼ ଆଶା କରି ରହିଥିଲି, ଗାୟତ୍ରୀ ମୋ ପାଖକୁ ଆସିଗଲେ ତାକୁ ବୁଝାଇ କହି ଶିବ ଯେପରି ଦୋଷ ସ୍ୱୀକାର କରି ଜେଲରୁ ଚାଲିଆସିବ ତାର ବ୍ୟବସ୍ଥା କରିବି।

ମାତାମହ—( ପ୍ରବେଶ )

ବିଶ୍ୱମ୍ଭର—( ପ୍ରସ୍ଥାନ )

ଯୋହିଣୀ—ଗାୟତ୍ରୀ ଆସିଲା ନାହିଁ, ଆସିବାକୁ ମନା କରିଦେଲା।

ମାତାମହ—ମୁଁ କହିଥିଲି, ଆସିବ ନାହିଁ, ଆସିବ ନାହିଁ। ଆସିବା ଉଚିତ ନୁହେଁ।

ଯୋହିଣୀ—ଗାୟତ୍ରୀ ମୋର କେତେ ଦୁଃଖ କଷ୍ଟ ପାଇ ସେଠି ପଡ଼ିଛି!
( ପ୍ରସ୍ଥାନ )

ଯଦୁ—( ପ୍ରବେଶ ) ଆଜ୍ଞା, ଆଜ୍ଞା, ନମସ୍କାର।

ମାତାମହ—( ହସି ) ଚାରି ମାସ ହେଲା ତୁମର ଦର୍ଶନ ମିଳି ନାହିଁ। ( ନିରେଖି ଚାହିଁ ) ଏଁ, ବେଶ ମଧ୍ୟ ବଦଳାଇ ଦେଇଛ!

ଦାଢ଼ି ରଖିଲେ ଦୃଢ଼ ଭକ୍ତ ହୁଏ ହେ ଯଦୁ ବାବୁ ! ଆଚ୍ଛା କହିଲ, କେଉଁଆଡ଼େ ଯାଇଥିଲ ? ତୁମ ନାଁ ତ ସମ୍ବାଦପତ୍ରରୁ ଶୁଣୁଛି ! ( କୁଣ୍ଢେଇ ଧରି ) ଦେଶଭକ୍ତ ମୋର ।

ଯଦୁ—ଯାଇଥିଲି ଶିବବାବୁଙ୍କୁ ଦେଖି । ଦୀକ୍ଷାନେଇ ଆସିଛି । ଜ୍ୱାଳାମୁଖୀ ବାକ୍ୟବାଣ ଝାଡ଼ି ଦଶ ଆଠଟା ସଭା କରିଦେଇଛି । ପୋଲିସ୍ ତ ପଛରେ ଲାଗିଛନ୍ତି । ଏଣେ ଘରର ଯାହା ତାଡ଼ନା ଦେଲେଣି । କରିସିବ ବୋଲି—

ମାତାମହ—ଗୁଡ଼ ସେ କଥା, ତାପରେ ଶିବଙ୍କୁ ଦେଖିଲ ?

ଯଦୁ—ତିନି ଦିନ ରହି ତିନି ଥର ସାକ୍ଷାତ କଲି । ଦେଶବନ୍ଦନା କାବ୍ୟ ଲେଖୁଛନ୍ତି । ସେଠି ଦାସକାଠିଆ ନାଟକରି ତାଙ୍କୁ ଶୁଣାଇଁ ଆସିଲି । ଭାରି ଖୁସି ହୋ । ସେ ହସହସ ମୁହଁଟି ଦିଶୁଛି ।

ମାତାମହ—ଏଁ କଣ କହିଲ ? ଦାସକାଠିଆ—

ଯଦୁ—ହଁ ଆଜ୍ଞା, ଦାସକାଠିଆ । ଗାଁମାନଙ୍କରେ ସେଇ ଦାସକାଠିଆ ଗୀତ ଗାଇ ସଭା କରାଇଛି ।

ମାତାମହ—କାହିଁ, ତୁମର ସେ ଦାସକାଠିଆ ନାଚଟା ମୋତେ ଟିକିଏ ଦେଖାଇବ ଟି—

ଯଦୁ—( ଲଜ୍ଜିତ ଭାବରେ ) ଆଜ୍ଞା, ଆପଣ ଟିକିଏ ଯଦି ପାଳିଆ ହେବେ—

ମାତାମହ—( ହସି ) ମୁଁ ବୁଢ଼ାଟେ ହେଲିଣି ।

ଯଦୁ—ଆଜ୍ଞା ! ବୁଢ଼ା ପିଲା ସମସ୍ତେ ନ ନାଚିଲେ ଦେଶ ସ୍ୱାଧୀନ ହୋଇପାରିବ ନାହିଁ । ଆପଣ ଆଉ ମୁଁ ତ ସମାନ ବୟସର ।

ମାତାମହ—ଆଚ୍ଛା, ତୁମେ ଆରମ୍ଭ କର । ଶିବଙ୍କୁ ତୁମେ ଦେଖି ଆସିଛ, ଆନନ୍ଦରେ ଦେହମନ ସବୁ ନାଚୁଛି, ଆଜି ନାଚବ । ଆରମ୍ଭ କର ।

ଯଦୁ—ଆଜ ନାଚବ ବୋଲି ନର୍ତ୍ତକ ବେଶରେ ଆସିଛି ।

ମାତାମହ—( ହସି ) ବଡ଼ ସୁନ୍ଦର ଦିଶୁଛ ଯଦୁ !

ଯଦୁ—ଦେଖନ୍ତୁ ବିଶ୍ୱମ୍ଭର ବାବୁ, ଶୁଣିଲେ —

ମାତାମହ—ନିର୍ଭୀକ ଭାବରେ ନାଚ ଯଦୁ ବାବୁ !

ଯଦୁ—( ନାଚ ଆରମ୍ଭ )

ଜୟ ଜୟ ପଦ୍ମାସନା ଜୟ ବୀଣାପାଣି,
ପରମ ବୈଷ୍ଣବୀ ମାତ ବ୍ରହ୍ମାଙ୍କ ନନ୍ଦିନୀ ।
ପ୍ରସନ୍ନ ବଦନେ ମାଗୋ ଚାହିଁ ଦିଅ ବାରେ,
ଭାସିଯାଉ ହୃଦ ମୋର ଧୀଷାର ବନ୍ୟାରେ ।
ଚିତ୍ତ-ପଦ୍ମେ ଦିଅ ତବ ପଦର ପରଶ,
ଉଚ୍ଛୁଳୁ ଅନ୍ତରେ ମୋର ଭକ୍ତି-ସୁଧାରସ ।
ଗାଇବି ଜନନୀ ଆଜ ଦେଶଭକ୍ତି ଗୀତ,
ନୟନ ସମ୍ମୁଖେ ମାଗୋ ହୁଅ ବିରାଜିତ ।
ବିରାଜ ଜନନୀ ମୋର ହୃଦୟ-ପଦ୍ମରେ,
ଗାଇବି ବନ୍ଦନା ତୋର ଗାୟତ୍ରୀ ଛନ୍ଦରେ ।

ମାତାମହ—ହୃଦୟ-ପଦ୍ମରେ ହେ ହୃଦୟ-ପଦ୍ମରେ,
ଗାୟତ୍ରୀ ଛନ୍ଦରେ ହେ ଗାୟତ୍ରୀ ଛନ୍ଦରେ ।
ହେ ହେ...

ଯଦୁ—ଶିବ ପୁରାଣରୁ ପଦେ ବୋଲୁଅଛି ମୁହିଁ
ସାଧୁଜନେ ଅପରାଧ ନ ଦେନବ କେହି ।

ମାତାମନ୍ଦ—ନ ଯେନବ କେହ୍ନି ହେ ନ ଯେନବ କେହ୍ନି
ହେ ହେ...

ଯଦୁ—ଏଥୁ ଅନ୍ତେ ସୁଜ୍ଞଜନେ ଶୁଣ ଦେଇ ମନ,
ଦେଶର ରୂପଟି ଆଜ କରିବ ଲେଖନ ।
ପରବେଶ କେଜାଣି ଆଜ ଜାଗେ କେଉଁ ଦୁଃଖ
ରହିଯାଏ ଦୂରେ ସବୁ ସାଂସାରିକ ସୁଖ ।
ଝର ଝର ଜଳଧାର ଯାଉଅଛି ବହି,
ପଥିକବିହୀନ ପଥ ଜନ ପ୍ରାଣୀ ନାହିଁ ।
ବିଜୁଳି ଚମକେ ରହି ରହି କ୍ଷଣେ କ୍ଷଣେ,
ଗରଜନ ଧ୍ୱନି ଶୁଭେ ଗଗନେ ଗଗନେ ।
ପ୍ରବଳ ବେଗରେ ବହେ ବ୍ୟାକୁଳ ବତାସ,
ପରଶିଣ ତାହା ମୋର ଜାଗେ ପ୍ରାଣେ ତ୍ରାସ ।

ମାତାମନ୍ଦ—(ପୁନରାବୃତ୍ତି)

ଯଦୁ—ବନରାଜ୍ୟେ ଲଗିଅଛି ମହା ସମାରୋହ
ଥର ଥର ଥରଉଠେ ଧରଣୀର ଦେହ ।
ବିଦ୍ୟୁତ ଆଲୋକେ ଦିଶେ ଦୀପହୀନ କୁଟୀ,
ସମଗ୍ର ହୃଦୟ ମୋର·ହୋଇଯାଏ ଦୃଷ୍ଟି ।
ଗରଜଇ ମେଘ, ଜଳ ଝରେ ଝରଝର,
ଘନ ଘନ ଗରଜନ କରଇ ଦର୍ଦ୍ଧୁର ।
ଦୂରୁ ଦିଶି ଯାଉଅଛି ମାଟି କୁଟା ଘର,
ତା ଭିତରେ ଥିବେ କେତେ ବ୍ୟକ୍ତି ଏ ଦେଶର ।
ଜଳସିକ୍ତ ହେଉଥିବେ ବର୍ଷାର ଝାପଟେ,
ବିତାଇବେ ରଜନୀ ସେ ବିଷମ ସଙ୍କଟେ ।

ଶିଶୁପୁତ୍ର ବୃଦ୍ଧ ବୃଦ୍ଧା ଥିବେ ସେ କୁଟୀରେ,
ପଡ଼ୁଥିବ ବୃଷ୍ଟି ଜଳ ବୃଦ୍ଧର ପିଠିରେ ।
ଜୀର୍ଣ୍ଣ ମ୍ଳାନ ବସନଟି ଯାଇଥିବ ଭିଜି,
ବସିଥିବ ରୁଗ୍‌ଣ ଯୁବା କୋଣେ ମଥା ପୋତି ।
ଡାକେ ହାତଯୋଡ଼ି ମୁହିଁ ଆହେ ଜଗନ୍ନାଥ,
କେବେ ତୁମେ ପୂରାଇବ ମୋର ମନୋରଥ ।

ମାତାମହ—ଡାକେ ହାତଯୋଡ଼ି ମୁହିଁ ଆହେ ଜଗନ୍ନାଥ,
କେବେ ଦୂର କରିବ ଏ ଦେଶର ଦୁରିତ ହେ !

ଯଦୁ—ପ୍ରତିକାର କର ପ୍ରଭୁ ପତିତପାବନ,
ଦୁଃଖୀଜନଙ୍କର ଦୁଃଖ କର ହେ ମୋଚନ ।

ମାତାମହ—(ପୁନରାବୃତ୍ତି)

ଯଦୁ—ଆଜ୍ଞା !

ମାତାମହ—(ଆମୋଦରେ) କ୍ସ ବୋଲନ୍ତେ—

ଯଦୁ—ଆଜ୍ଞା, ବର୍ଷା ଶେଷ ହେଲା, ଶରତ୍ କାଳ ଆସିଲା ।

ମାତାମହ—ବୋଲ ଯଦୁବାବୁ, ଆଜ ନୃତ୍ୟରସରେ ମନ ଉନ୍ମତ୍ତ ହୋଇଉଠିଛି ।

ଯଦୁ—ଜୟ ଜୟ ଜଗତଜନନୀ ବୀଣାପାଣି,
ଗାଇବ ବନ୍ଦନା ତୋର କଣ୍ଠେ ଦିଅ ବାଣୀ ।

ମାତାମହ—(ପାଳିଆ ଧରିବା)

ଯଦୁ—ବର୍ଷାଋତୁ ଯାଇ ହେଲା ଶରତ ସକାଳ,
ଅରୁଣ ଆଲୋକେ ହେଲା ଧରଣୀ ଉଜ୍ଜ୍ୱଳ ।
ଅନ୍ନପୂର୍ଣ୍ଣାଙ୍କର ଆଜ ପୂଜା ସମାରୋହ,
ଧନବନ୍ତ ଘରେ ଏହା ଘଟେ ଅହରହ ।

କରୁଛନ୍ତି ବୋଲି ମନେ କରି ଅହଙ୍କାର,
ବିତରଣ କରୁଛନ୍ତି ଖାଦ୍ୟ ଘର ଘର ।
ଲଭିବା ନିମନ୍ତେ ସେହି ସମାଜ ସମ୍ମାନ,
ଦେଖାଇ ଲେଖାଇ କେତେ ଦେଉଥାନ୍ତି ଦାନ ।
ଜଠରଜ୍ୱାଳାରେ ଦେଖ ଦୁଃଖୀ ପ୍ରଜାକୁଳ,
ଖାଆନ୍ତି ଅଖାଦ୍ୟ ହୋଇ ଅତ୍ୟନ୍ତ ଆକୁଳ ।
ଜୀର୍ଣ୍ଣ ମଳିନ ବସନ କରନ୍ତି ଧାରଣ,
କରିବା ନିମନ୍ତେ ଆହା ଲଜ୍ଜା ନିବାରଣ ।
ଦୁଃଖୀ ପ୍ରଜାକୁଳଙ୍କର ମାଟିର କୁଟୀର,
ପାଣି ପବନରେ ହୋଇଯାଏ ଛାରଖାର ।
ଏ ଦାରୁଣ ଦୃଶ୍ୟ ପ୍ରଭୁ ନୟନରେ ଦେଖି,
ଦିନେ ଦିନେ ଚିତ୍ତ-ପଦ୍ମ ଯାଉଅଛି ଶୁଖି ।
ଉଚ୍ଛୁଳି ଉଚ୍ଛୁଳି ଉଠେ ଆଜି ମୋର ଶୋକ,
ଭରିଯାଏ ପ୍ରାଣେ ବିଶ୍ୱ ବ୍ରହ୍ମାଣ୍ଡର ଦୁଃଖ ।
ଗତ ଜନମର ସ୍ମୃତି ଜାଗେ ରହି ରହି,
ଜନ୍ମ ଲଭିଥିଲି କେବେ ଏ ଦେଶରେ ମୁହିଁ ।
ଏଇ ଧୂଳି ତଳେ କେବେ କରି ଦେହତ୍ୟାଗ,
ପୁଣି ଆସିଅଛି ବହି ଅତି ଅନୁରାଗ ।
ଅତି ପରିଚିତ ଅଟେ ଏ ଦେଶ ମୋହର,
ଏ ନଗର ଏ ସଉଧ ଏ ଗ୍ରାମ ପ୍ରାନ୍ତର ।
ବାରମ୍ବାର ପ୍ରାଣପୁରେ ଜାଗଇ ସ୍ମରଣ ;
ଏ ଭାରତବର୍ଷ ଥିଲି ପୁଣ୍ୟ ତପୋବନ ।
ଏ ଭାରତେ ଜନ୍ମିଥିଲେ ମହାଋଷିଗଣ,
ଦ୍ୱିଜକଣ୍ଠେ କଲେ ବେଦ ବେଦାନ୍ତ ଗାୟନ ।

କେତେ ଯୋଗୀ ଋଷି କେତେ କେତେ ମହାଶାସ୍ତ୍ର,
ବିରଚିଲେ ଗୂଢ଼ ଗୂଢ଼ ଅର୍ଥ କରି ନ୍ୟସ୍ତ ।
ନାହିଁ ମାସ ତିଥି ବାର ନାହିଁ ତ ତାରିଖ,
କେଜାଣି କେ ରଚିଅଛି ଏ ମହା ଆଲେଖ୍ୟ ।
ମୂର୍ଖ ନିରକ୍ଷର ଆଜି ସେ ଦେଶର ପ୍ରଜା,
ଶାସନ କରନ୍ତି ଦେଶେ ବୈଦେଶିକ ରାଜା !

ମାତାମହ—(ଗାଳିଆ ଧରିବା)

ସଦୁ—ମାତଃ ମୋର ଚନ୍ଦ୍ରାସନେ ପ୍ରସନ୍ନ ବଦନେ,
ମିଳିଯାଉ ତୋ ନୟନ ଆଜି ମୋ ନୟନେ ।
ଭାଷାର ଜାହ୍ନବୀଧାର ବୁହାଅ ଅନ୍ତରେ,
ମୁଗ୍ଧ କର ମାତ ମୋତେ ପ୍ରେମର ମନ୍ତ୍ରରେ ।
ହେ ଚେତନେ, ଦିଅ ପ୍ରାଣେ ଅପୂର୍ବ ଚେତନା,
ଏ ଦେଶର ଦୁଃଖ-ଗୀତି କରିବି ରଚନା ।
ଜନନୀ ଜନମଭୂମି ସ୍ୱର୍ଗୁ ଗରୀୟସୀ,
ଏ ଋଷି ବାକ୍ୟଟି ମନେ ହେଉଥିବ ଘୋଷି ।
ବନ୍ଦୀଗୃହେ ବସିଅଛି, ମୋର ବନ୍ଧୁବୃନ୍ଦ,
ଉଚ୍ଛୁଳି ଉଠୁଛି ପ୍ରାଣେ ବିଚ୍ଛେଦ-ଆନନ୍ଦ ।
ଦୁଃଖିନୀ ଜନନୀ ମୋର ରହିଅଛି କାହିଁ ?
ବସିଛୁ କି ଦ୍ୱାରଦେଶେ ମୋର ପଥ ଚାହିଁ ?
ହତାଶାରେ ହୃଦ ତୋର ହୁଅଇ କି ଭଗ୍ନ ?
ମୋ ବିରହେ ଅଶ୍ରୁ ତୋର ପଡ଼ୁଛି କି ଝରି
ବୃଥାରେ ବ୍ୟଥିତା ତୁହି ନ ହୁଅ ଗୋ ମାତ,
ପାଳୁଅଛି ତୋ ସନ୍ତାନ ଦେଶସେବା ବ୍ରତ ।

ଏ ଦେଶର ସ୍ମୃତି ପ୍ରାଣେ ଜାଗେ ରହି ରହି,
ଏ ଦେଶରେ କେବେ କାହିଁ ଜନ୍ମିଥିଲି ମୁହିଁ ।
ସେ ଭାବ ଆଜି ହୃଦୟେ ହୁଏ ଜାଗରୂକ,
ସୀମାହୀନ ପ୍ରେମେ ମୋର ଭରିଯାଏ ବକ୍ଷ ।
ଅହେ ଦେଶବାସୀ, ତୁମେ ମୋର ପ୍ରିୟ ଭାଇ,
ଆଜି ତବ ମୂକ ମୁଖେ କଥା ଫୁଟୁ ନାହିଁ ।
ନାହିଁ ଶିକ୍ଷାଦୀକ୍ଷା ନାହିଁ ଶାସ୍ତ୍ର ଅଧ୍ୟୟନ,
ବୃଥାରେ ଯାଉଛି ଆହା ମାନବ ଜନମ ।
କାହିଁ ଅଛ ତୁମେ ଆଜି ହେ ପ୍ରଜାବତ୍ସଳ,
ତବ ବିଚ୍ଛେଦରେ ପ୍ରଭୁ ହୁଏ ମୁଁ ଆକୁଳ ।
ଦୈତ୍ୟର ପ୍ରଭାବ ଦେଶେ ଦିନୁଦିନ ବଢ଼େ,
ଦେବତା ଓହ୍ଲାଇ ତୁମେ ଆସ ମର୍ତ୍ତ୍ୟପୁରେ ।
ଆହେ ବାଲମିକି ଆସ ଆଉ ଥରେ ମର୍ତ୍ତ୍ୟ,
ଅନାଚାର ଅତ୍ୟାଚାର ବ୍ୟାପିଗଲା ଏଥେ ।
ଏ ଦେଶ ଉପରେ ତୁମେ ଦିଅ କୃପା ଦୃଷ୍ଟି,
ଆଉ ଥରେ ଶ୍ରୀରାମଙ୍କୁ କର ତୁମେ ସୃଷ୍ଟି ।

ମାତାମହ—(ପାଳି ଧରି)

ରାମଚନ୍ଦ୍ର ଆସି ରାଜା ହୁଅନ୍ତୁ ଏ ଦେଶେ,
ପୁଲକିତ ହେଉ ଧରା ସୁଶ୍ୟାମଳ ବେଶେ ।

ନେପଥ୍ୟେ—ଆରେ, କିଏ ରେ !

ମାତାମହ—(ହସି ହସି)

ବୃତ୍ରାସୁର ବଂଶଧର ଆସନ୍ତି କି ଧାଇଁ,
କ୍ଷିପ୍ରପଦେ ଏ ସ୍ଥାନରୁ ଚାଲ ଯିବୁ ଭାଇ !

ବିଶ୍ୱମ୍ଭର—(ପ୍ରବେଶ)

(ମାଡାମଦ୍ୱ, ଯଦୁବାବୁ ପ୍ରସ୍ଥାନ)

ବିଶ୍ୱମ୍ଭର—ଏଇ ବୁଢ଼ାମାନେ ହିଁ ତ ଦେଶଟାକୁ ନଷ୍ଟ କରିବେ । ଆମେ କେତେଟା ହୋଇ ଆଉ ରକ୍ଷା କରିପାରିବୁ ନାହିଁ । ଶ୍ୱଶୁର ବୁଢ଼ାଙ୍କର ମତଗତି ଦେଖି ଆଉ ଘରେ ରହିବାକୁ ଇଚ୍ଛା ହେଉ ନାହିଁ । (ପ୍ରସ୍ଥାନ)

---

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

ସ୍ଥାନ—କାରାପ୍ରାଙ୍ଗଣ

ଶିବ—( ପ୍ରବେଶ ) କାରାପ୍ରହରୀର ପ୍ରେମ-ଅଶ୍ରୁରେ ମୋର ପ୍ରାଣ ଅଭିଷିକ୍ତ ହୋଇଯାଇଛି ।

ପ୍ରହରୀ—( ପ୍ରବେଶ ) ଆଜ୍ଞା ! ଆପଣଙ୍କୁ ଦେଖିଲେ ମୋର ମନେ ହେଉଛି, ଆପଣ ଶୁଷ୍କ ମୁନିଙ୍କର କଳ୍ପଦ୍ରୁମ ।

ଶିବ—( ଆବେଗରେ ) ସ୍ୱପ୍ନେଶ୍ୱର ଭାଇ ! ଜ୍ଞାନଗୌରବରେ ତୁମର ପ୍ରାଣରାଜ୍ୟ ଉଦ୍ଭାସିତ ହୋଇଉଠିଛି । ସେଥିପାଇଁ ତୁମେ ମୋ ଭଳି ଜଣେ କ୍ଷୁଦ୍ରଶକ୍ତିସମ୍ପନ୍ନ ମନୁଷ୍ୟକୁ କଳ୍ପଦ୍ରୁମ ବୋଲି ନାମ ଦେଇ ଆନନ୍ଦ ପାଉଛ ।

ପ୍ରହରୀ—ସେ କଥା ତ ନୁହେ ଆଜ୍ଞା, ଅପଣଙ୍କ ବଚନ-ସୁଧାଧାରରେ ଆମର ମରୁହୃଦୟ ଶ୍ୟାମଳ ଶୋଭନ ହୋଇଯାଇଛି ।

ଶିବ—( ଆବେଗରେ କୁଣ୍ଢାଇ ଧରି ) ସ୍ୱପ୍ନେଶ୍ୱର ଭାଇ ! ତୁମର ଏ ସ୍ନେହସୁଧା ପାଇ ମୁଁ ଯେ କ୍ଷୁଧା ତୃଷା ଭୁଲିଯାଉଛି ।

ପ୍ରହରୀ—( ମଥା ନତ କରି ) ମୋର ହୃଦୟ ଯେ ବିଦୀର୍ଣ୍ଣ ହୋଇ-ଯାଉଛି । ଆପଣଙ୍କୁ ମୁଁ ନିତ ସନ୍ଧ୍ୟାରେ ଅନ୍ଧକାର କକ୍ଷରେ ରଖି ଦେଇ ଦ୍ୱାର ଅବରୋଧ କରିଦେଉଛି ।

ଶିବ—(ଆନନ୍ଦାଶ୍ରୁ ମୋଚନ କରି) ସ୍ୱପ୍ନେଶ୍ୱର ଭାଇ ! ତୁମେ ଯେ ତୁମର କର୍ତ୍ତବ୍ୟ କରୁଛ । ତାହା ହିଁ ତୁମର ପରିବାର ପ୍ରତି-ପୋଷଣର ଉପାୟ ।

ପ୍ରହସ୍ତ—ମୁଁ ବଡ଼ ଶକ୍ତିହୀନ, ବଡ଼ ଭୀରୁ । ମୋ ସ୍ତ୍ରୀ ବନବାସିନୀ ଆପଣଙ୍କ କାବ୍ୟ ପଢ଼ି ଅସହଯୋଗରେ ଯୋଗ ଦେବାକୁ ଚାଲିଗଲା ।

ଶିବ—(ବିସ୍ମିତ ହୋଇ) କଣ କହୁଛ ସ୍ୱପ୍ନେଶ୍ୱର ଭାଇ ! (ଆବେଗରେ) ତୁମର ପତ୍ନୀ ମହାତ୍ମାଙ୍କ ପଦାଙ୍କ ଅନୁସରଣ କରି ଯାଇଛି ସମରକ୍ଷେତ୍ରକୁ !

ପ୍ରହସ୍ତ—ବଡ଼ ତେଜସ୍ୱିନୀ ସେ, ବଡ଼ ତେଜସ୍ୱିନୀ ! ମୁଁ ଅଧମ ଯାହା କରିପାରିଲି ନାହିଁ, ସେ ତାହା କରିପାରିଛି । ଆପଣଙ୍କ କବିତା ପଢ଼ି ତାର ସେ କି ଭାବାବେଶ ! ଯିବା ସମୟରେ କହିଯାଇଛି ସେ ଏଇ ଜେଲକୁ ଆସି ଆପଣଙ୍କ ଚରଣ ଦର୍ଶନ କରିବ ।

ଶିବ—ମହାତ୍ମାଙ୍କ ଆଦେଶ ପାଳନରେ ମୁଁ ଆଜି ହିଁ ସକ୍ଷମ ହେଲି ସ୍ୱପ୍ନେଶ୍ୱର ଭାଇ ! ମୋର ସମସ୍ତ ଚିନ୍ତା ତୁମେ ହିଁ ସାଫଲ୍ୟମଣ୍ଡିତ କରିଦେଇଛ । ତୁମର ଆଶୀର୍ବାଦରେ—

ପ୍ରହସ୍ତ—(ପଦସ୍ପର୍ଶ କରି) ମୁଁ ବଡ଼ ଅସମର୍ଥ, ସଂସାର-ବନ୍ଧନରେ ଆବଦ୍ଧ । ମୋତେ ଶକ୍ତି ଦିଅନ୍ତୁ—

ଶିବ—(ସ୍ୱଗତ) ପ୍ରହସ୍ତ-ପତ୍ନୀ ଗ୍ରହଣ କରିପାରିଛି ମୋର ପ୍ରାଣର ଆବେଦନ । (ପ୍ରକାଶ୍ୟେ) ବନବାସିନୀ ଉପରେ ମହାତ୍ମାଙ୍କ ମନ୍ତ୍ରର ପ୍ରଭାବ ପଡ଼ିଛି ସ୍ୱପ୍ନେଶ୍ୱର ଭାଇ ! ତାର ଜୀବନ ଧନ୍ୟ ହୋଇଯାଇଛି । ସେ ଆପଣାକୁ ଧନ୍ୟ କରି ମୋତେ ମଧ୍ୟ ଧନ୍ୟ କରିଦେଇଛି । ଲେଖନୀ ମୋର ସାର୍ଥକ ହୋଇଯାଇଛି ।

ପ୍ରହସ୍ତ—ଆପଣଙ୍କ ହୃଦୟର ଭାବଧାରାରେ ଅବଗାହନ କରି ମୋର ହୃଦୟ ଶୁଚିଶୁଦ୍ଧ ହୋଇଆସୁଛି ।

ଶିବ—ତୁମର କହିବା କଥାରୁ ବୁଝିପାରୁଛି ।

ପ୍ରହରୀ—ମୋତେ ପଥ ଦେଖାଇ ଦିଅନ୍ତୁ ।

ଶିବ—ପଥ ଦେଖାଇବା ଶକ୍ତି ମୁଁ କାହୁଁ ପାଇବି ସ୍ୱପ୍ନେଶ୍ୱର ଭାଇ ! ତୁମର ଆତ୍ମା ହିଁ ତୁମକୁ ପଥ ଦେଖାଇ ଦେଇଛି । ବନ-ବାସିନୀ ଯେ ତୁମ ଉପରେ ସବୁ ଭାର ଅର୍ପଣ କରିଦେଇ ଯାଇଛି ।

ପ୍ରହରୀ—( ବିଷାଦ ଭାବରେ) ବଡ଼ ଦୁର୍ବଳ ମୁଁ । (ପ୍ରସ୍ଥାନ ଉଦ୍ୟମ) ବନ ଯାହା ପାରିଲା, ମୁଁ ପାରିଲି ନାହିଁ । ବନ ନିଷ୍କ୍ରାନ୍ତରେ ଚାଲିଗଲା, ମୁଁ ରହିଗଲି ବନ୍ଧନ ଭିତରେ । (ପ୍ରସ୍ଥାନ)

ଶିବ—ପ୍ରହରୀର ପତ୍ନୀ ପ୍ରଭାବିତ ହେଲା ମହାତ୍ମାଙ୍କ ମନ୍ତ୍ର ଶକ୍ତିରେ ଅଥଚ ଆମର ଶିକ୍ଷିତ ସମ୍ପ୍ରଦାୟ ଉପରେ ଅତି କ୍ଷୀଣ ପ୍ରଭାବ ପଡ଼ୁଛି । ତେବେ ବର୍ତ୍ତମାନ ପ୍ରଚଳିତ ଶିକ୍ଷା କଣ ବୋଧ-ଶକ୍ତିକୁ ହ୍ରାସ କରି ଦେଉଛି ? ( ଚିନ୍ତିତ ଭାବରେ ପ୍ରସ୍ଥାନ )

ଡାକ୍ତର—ଚିଠି ଆସିଛି । ଖୋଲା ହେଲା, ବହୁବାର ପାଠ କରାଗଲା, ତାପରେ ତାଙ୍କୁ ଦେବା କଥା । ବଡ଼ ବ୍ୟଥା ଲାଗୁଛି ଭାବିଲେ । ମା ତାଙ୍କର ମୃତ୍ୟୁଶଯ୍ୟାରେ । ଚିଠି ପଢ଼ୁ ପଢ଼ୁ ସେ କରୁଣ ଉଜ୍ଜ୍ୱଳ ମୁହଁରେ ବିଷାଦ-କାଳିମା ବୋଳି ହୋଇଯିବ । କବିତା ଖାତାଟା ଦେଇଥିଲେ, ପଢ଼ିପାରି ନାହିଁ । ତାଙ୍କୁ ହିଁ କହିବି ପଢ଼ିବେ । ପରେ ଚିଠିର କଥା କହିବି । ମୁଁ ଏପରି ଗୋଟାଏ ଦୁର୍ବଳ ମନୁଷ୍ୟ ଯେ କାହାରି ଦୁଃଖ ଦେଖିଲେ ସହ୍ୟ କରିପାରେ ନାହିଁ ।

ଶିବ—( ପ୍ରବେଶ ) ( ଦେଖି ) ନମସ୍କାର ଡାକ୍ତରବାବୁ !

ଡାକ୍ତର—ନମସ୍କାର, ନମସ୍କାର ! ! ଆଜି ଦେଶରେ ଶତ ଶତ, ସହସ୍ର ସହସ୍ର, ଲକ୍ଷ ଲକ୍ଷ ନରନାରୀ ଆପଣଙ୍କ ଧ୍ୟାନ ମୂର୍ତ୍ତି ସମ୍ମୁଖରେ ହାତ ଯୋଡ଼ୁଛନ୍ତି । ମୁଁ ଗୋଟାଏ ଅତି ତୁଚ୍ଛ ।

ଶିବ—(ବସ୍ମିତ ଭାବରେ) କେହି ତୁଚ୍ଛ ନୁହେ ଡାକ୍ତର ବାବୁ, କେହି ତୁଚ୍ଛ ନୁହେ । ପାଉଁଶ ଭିତରେ ଅଗ୍ନି ଲୁଚିରହିଲା ପରି ତୁମର ଦୁର୍ଜୟ ଶକ୍ତି ଲୁଚି ରହିଛି । କେତେବେଳେ ଯେ ସେ ବାହାରି ପଡ଼ିବ—

ଡାକ୍ତର—(ହସି) ଯେ ପାଉଁଶ ଗଦା ଭିତରେ ଯବ ନିଆଁ ଥିବ ସେଇ ଭିତରେ ହିଁ ଲିଭିଯିବ ଆଜ୍ଞା ! ଦେଖନ୍ତୁ ଆଜ୍ଞା, ଖାତା ନେଇଥିଲି, ପଡ଼ିଲି । ଆପଣଙ୍କୁ ମୁହଁରୁ ଆଉ ଥରେ ଶୁଣିବାକୁ ଇଚ୍ଛା ହେଉଛି ।

ଶିବ—ମହାତ୍ମାଙ୍କ ଇଚ୍ଛା, କର୍ମୀମାନେ ନିଜ ନିଜର ଭାବନା ଭାଷାରେ ବ୍ୟକ୍ତକରି ନିରକ୍ଷରମାନଙ୍କୁ ଶୁଣାଇବେ । ମୁଁ ତ କବି ନୁହେ, ଜଣେ ସେବକ ମାତ୍ର । ମହାତ୍ମାଙ୍କ ଆଦେଶ ପାଳନ ନିମନ୍ତେ ଯାହା କିଛି କରୁଛି ।

ଡାକ୍ତର—କାମ ଶେଷ କରିଦେଇଛି । ଆଜି କବିତା ଶୁଣିବି ।

ଶିବ—(ହସି) କାଲି ତ ଅଧେ ଶୁଣିଛ, ଯେଉଁଠୁ ବାକି ଥିଲା ସେଠୁ ଆରମ୍ଭ କରିବି—

(ପଠନ)

ଦୈତ୍ୟର ପ୍ରଭାବ ଦିନୁ ଦିନ ବଢ଼େ,
ଦେବତା ଓହ୍ଲାଇ ଆସ ମର୍ତ୍ତ୍ୟପୁରେ ।
କର୍ମର ତପସ୍ୟା ଜ୍ଞାନର ତପସ୍ୟା,
ଦିଅ ପ୍ରାଣେ ପ୍ରାଣେ ଆହେ ମହାଯଶା !
ହେ କରୁଣାମୟ ତୁମର ଏ ଦେଶେ,
ପ୍ରଜାପୁଞ୍ଜ ତବ ପାନହୀନ ବେଶେ ।

ଅଜ୍ଞାନ-ତମସେ ହୋଇ ସମାଚ୍ଛନ୍ନ,
ଆମ୍ଭାଙ୍କୁ ଦିଅନ୍ତି ଅତି ଅପମାନ ।
ଧନ ଜନ ଦର୍ପେ ହୋଇ ଦର୍ପୀ ଅତି,
ଧର୍ମ ଜ୍ଞାନାର୍ଜନେ ନ ଦିଅନ୍ତି ମତି ।
ସତ୍ୟର ନ୍ୟାୟର ଦଣ୍ଡ ଧରି ହାତେ,
ବିଜେ କର ପ୍ରଭୁ ତବ ଜୟ ହେଉ ।
ଭାରତବର୍ଷର ହେ ଭାଗ୍ୟବିଧାତା,
ପଠାଅ ସୁଦୂରୁ ପ୍ରେମର ବାରତା ।
ଦେଖ ତବ ବୁଡ଼େ ଅଜ୍ଞାନ-ତିମିରେ,
ଆବିର୍ଭୂତ ହୁଅ ଭାରତଭୂମିରେ ।
ବଡ଼ ବୋଲି ମନେ କରଇ ଯେ ଗର୍ବ,
ଚୂର୍ଣ୍ଣକର ତାହା ଦେଖି ଜ୍ଞାନ-ଖଡ୍‌ଗ ।
ଧନ ସଙ୍ଗେ ମୁହିଁ ହୋଇ ଅତି ଦୀନ,
ଭିକ୍ଷୁକ ବେଶରେ ଯାପିବି ଜୀବନ ।
ଗୃହେଁ ନାହିଁ ଧନ ଗୃହେଁ ନା ସମ୍ମାନ,
ସହିବାକୁ ଦୁଃଖ କର ମୋତେ କ୍ଷମ ।
ଆସ ଆସ ମୋର ବିପଦଭଞ୍ଜନ,
ମାନବ ଜାତିର ମାନସରଞ୍ଜନ ।
ଦୂରେ ବହୁ ଦୂରେ ଶୁଭେ ଜୟ ଧ୍ୱନି,
ବ୍ୟାପେ ପ୍ରତିଧ୍ୱନି ଆକାଶ ଅବନୀ ।
ସାଜରେ ସୈନିକ ସାଜ ସାଜ ସାଜ,
ଦୂରୁ ଦିଶୁଛନ୍ତି ଜୟୀ ମହାରାଜ ।
ଅକୂଳ ଅଟେ ଏ କର୍ମ-ପାରାବାର,
ପାର କର ମୋତେ ମୋର କର୍ଣ୍ଣଧାର ।

ଉଜ୍ଜ୍ୱଳ ଦିଶାଇ ଅହିଂସା ସାୟକ,
ଦିଅ ସେଇ ଅସ୍ତ୍ର ହେ ଜନନାୟକ !
ଲକ୍ଷ୍ୟପଥୁ ଯେହ୍ନେଁ ନ ହୁଏ ମୁଁ ଭ୍ରଷ୍ଟ,
ଚାଲିବି ମୁଁ ସହି ସବୁ ପଥ କଷ୍ଟ ।
ହେ ଦେଶଦେବତା ! ଦିଅ ଆଶୀର୍ବାଦ,
ଘୁଞ୍ଚିଯାଉ ପ୍ରାଣୁ ଜଡ ଅବସାଦ ।
ଜାଣେ ମନେ ମନେ ସହଜ ସାଧନା,
ନୁହେ ତବ ସେବା, ତବ ଆରାଧନା ।
ଅତି ଭୟଙ୍କର, ତୁମେ ଅତି ଶାନ୍ତ,
କ୍ଷଣକରେ କର ମୋହ ଅଭିଭୂତ ।
ଆହେ ଭୟାବହ ଭୟବିନାଶନ,
ହୃଦୟ ଆସନେ ହୁଅ ସମାସୀନ ।
ଯେତେ ଆବର୍ଜନା ଅଛି ଏ ଅନ୍ତରେ,
ପୋଛି ହେଉ ତବ ପବିତ୍ର ମନ୍ତ୍ରରେ ।
ଅଧମ ଭକତ ଡାକୁଛି କାତରେ,
ରହ ପ୍ରଭୁ ତୁମେ ହୃଦୟ ଭିତରେ ।
ଆହେ ମହାପ୍ରାଣ କର ପ୍ରାଣବାନ,
ଦେଶ ହସ୍ତେ ଦେବି ଏ ଜୀବନ ଦାନ ।
ପରାଧୀନେ ରହି ଆହା ମୋ ଉତ୍କଳ,
ମଥା ପୋତି କାନ୍ଦେ ହୋଇଣ ବିକଳ ।
ନ ମୁଞ୍ଚ ଜନନୀ ନୟନୁ ଲୋତକ,
ଅଚିରେ ଘୁଞ୍ଚିବ ତୋର ସବୁ ଦୁଃଖ ।
ଆସନ୍ତୁ ସନ୍ନ୍ୟାସୀ ପଢ଼ି ସତ୍ୟ ମନ୍ତ୍ର,
ସେ ମନ୍ତ୍ରେ ସକଳେ ହେବେ ଜାଗରିତ ।

ଉପ୍ଟ ବର୍ଷିକା ଯାଉଅଛୁ ଦୂରେ,
ମହାମନ୍ତ୍ର ଶୁଭେ ମେଘ ମନ୍ଦ୍ର ସ୍ୱରେ !
ସତ୍ୟ ପଥେ ରହି ସାଧିବ ଯେ ଯୋଗ,
ଖାରକଲ୍ୟଗ୍ୟା ଧରା ହେବ ତାର ଭୋଗ୍ୟ ।
ହେ ଶକ୍ତିଶାଳିମା, ଆଗୋ ବସୁନ୍ଧରେ !
ଦଅ ଆଶୀର୍ବାଦ ଆଜ ଅଧରେ ।
ଲଲାଟେ ପିନ୍ଧାଇ ଦଅ ଜୟଟୀକା,
ସମରକ୍ଷେତ୍ରକୁ ଯିବ ଗୁଡ଼ ଶଙ୍କା ।
ଜୟମାଲ୍ୟ ଅର୍ପି ଗଳାରେ ତୋହର,
ସାର୍ଥକ କରିବ ସର୍ବ କର୍ମଭାର ।

ଡାକ୍ତର—ଭାବ ଜାଗ୍ରତ କରାଇବା ନିମନ୍ତେ ଦେଶଦେବତା ଆପଣଙ୍କ ହୃଦୟରେ ସବୁ କହି ଦେଉଛନ୍ତି ।

ଶିବ—ତାଙ୍କର ଆଦେଶରେ ଯାହା କିଛି କରିଥାଏ, ଭାଷାର ଭ୍ରମ ମୋର ରହିଛି ଡାକ୍ତର ବାବୁ, ଆପଣ ମାର୍ଜନା କରିବେ ।

ଡାକ୍ତର—କାଲି ଆସି ପୁଣି ଶୁଣିଯିବି । ଦେଖନ୍ତୁ ଭୁଲିଯାଇଛି, ଆପଣଙ୍କ ରହିବା ସ୍ଥାନଟା ପରିଷ୍କାର ଅଛି କି ନାହିଁ ଦେଖି ଦେଇ ଯିବି । ( ପ୍ରସ୍ଥାନ )

ଶିବ—( ଚିନ୍ତିତ ଭାବରେ ) ଘର ଛାଡ଼ି ଆସିବା ନ' ମାସ ହେଲା । ମୁଁ ଆସିବା ପରେ ଗାୟତ୍ରୀ ସମ୍ବନ୍ଧରେ ବୋଉ ଲେଖିଥିଲା । ତାପରେ ବୋଉ ଆଉ କିଛି ନ ଲେଖିଲେ ହେଁ ତାର ଚିଠିରୁ ସୂଚନା ହେଉଛି, ଗାୟତ୍ରୀର ସନ୍ତାନଟିଏ ହେବ । ( ହସି ) ତାର ପବିତ୍ର ପ୍ରଣୟପତ୍ରିକାରେ ପରହସ୍ତସ୍ପର୍ଶ ଲାଗିଯିବ ବୋଲି ଗାୟତ୍ରୀ ମୋ ପାଖକୁ ଲେଖୁ ନାହିଁ । ବନ୍ଦୀର ଚିଠି ପରୀକ୍ଷା କରି ବନ୍ଦୀର ହସ୍ତଗତ କରାଉଛନ୍ତି ।

ଆଜି ଘର ମନେ ପଡ଼ୁଛି । ବୋଉ ଅସୁସ୍ଥ ଥିଲା । ଦ୍ୱିତୀୟ ଶ୍ରେଣୀରେ ବନ୍ଦୀ ପଠାଇ ଦେଇଥିଲି ବୁଢ଼ା ହୁସେନ ଖାଁ । ଚିଠି ଲେଖିଥିଲି—ପଞ୍ଚଗଲି, ଗୋଡ ଭାଙ୍ଗିଯାଇଛି । ସେ ବି ଘରେ ଅଛି । ବୋଉ ପାଟରେ ଡକାଉଥାଇ ବସି ଗୀତ ଗାଉଥିବ । ବଡ଼ କବିତା ଖାତାଟା ପଠାଇ ଦେଇଥିଲି—ଗାୟତ୍ରୀ ପଢ଼ିଥିବ, ବୋଉ ଶୁଣିଥିବ ।

ଡାକ୍ତର—( ପ୍ରବେଶ ) ଆଜ୍ଞା ! ଚିଠିପତ୍ର ଯାଞ୍ଚ ଅଫିସକୁ ଯାଇଥିଲା । ମୁଁ ଯାଏ , ଆପଣଙ୍କର ଚିଠି ଯଦି ଥାଏ, ଧରି ଆସିବି !

( ପ୍ରସ୍ଥାନ )

ଶିବ—ବୋଉ ଯଦି ଅସୁସ୍ଥ ଥିବ ! ଯେପରି ଦେଖୁଛି, ଗାୟତ୍ରୀ ତାର ଜୀବନସଙ୍କଟରେ ନିକଟବର୍ତ୍ତିନୀ ହେଲାଣି । ଗାୟତ୍ରୀର ସନ୍ତାନ ! ମୋର ପୁଅ ! ପରାଧୀନ ଦେଶର ସନ୍ତାନ ହେବ ସେ । କାରାବଦ୍ଧ ବ୍ୟକ୍ତିର ବଂଶଧର—

ଡାକ୍ତର—( ପ୍ରବେଶ ) ଚିଠି ପୁନରପି ଯାଞ୍ଚକୁ ଯାଇଛି । କିନ୍ତୁ ମୌଖିକ ଜଣାଇଦେବା ଅନୁମତି ପାଇଛି । ବଡ଼ ଦୁଃସମ୍ବାଦ ।

ଶିବ—( ଚକିତ ଭାବରେ ) ଦୁଃସମ୍ବାଦ ! ଦୁଃସମ୍ବାଦ ତ ଶୁଣିଥିଲି ଯେ ବନ୍ଧୁ ମାଷ୍ଟ୍ରେ ଜେଲକୁ ଗଲେ । ସେ ବର୍ତ୍ତମାନ କି ଅବସ୍ଥାରେ ଅଛନ୍ତି ଜାଣେ ନାହିଁ ।

ଡାକ୍ତର—ତା ଅପେକ୍ଷା—

ଶିବ—ଆହୁରି ବଡ଼ ଦୁଃସମ୍ବାଦ ! ଶୁଣିଥିଲି, ରଘୁମଣି ଯେ କି ମୋର ପାଠଶାଳାର ସମସ୍ତ ଭାର ନେଇଥିଲା, ସେ ମଧ୍ୟ ଜେଲକୁ ଚାଲିଗଲା । ପରେ ସଦାନନ୍ଦ ତା ପଛରେ ଗଲା ।

ସେ ଜେଲରେ ଅସୁସ୍ଥ ଅଛି ବୋଲି ଶୁଣିଥିଲି । ଏହାଠାରୁ ବଡ଼ ଦୁଃସମ୍ବାଦ ଆଉ କଣ ଥାଇପାରେ ?

ଡାକ୍ତର—ବଡ଼ ଦୁଃସମ୍ବାଦ ଆଜ୍ଞା, ଆପଣଙ୍କର ମା—

ଶିବ—ବୋଉ ! ତାହାହେଲେ ବୋଉ ଆଉ ନାହିଁ !

ଡାକ୍ତର—ଅସ୍ଥିର ହୁଅନ୍ତୁ ନାହିଁ ଆଜ୍ଞା ! ବୋଉ ଅଛନ୍ତି । କିନ୍ତୁ ଚିଠିରୁ ଜଣାଯାଉଛି, ଅବସ୍ଥା ଭଲ ନୁହେଁ । ଆପଣ ଯଦି ଦେଖିଯିବେ, ଆବେଦନପତ୍ର ଦିଅନ୍ତୁ, ମୁଁ ସବୁ ବ୍ୟବସ୍ଥା କରିଦେବି ।

ଶିବ—( ଖାତାରୁ କାଗଜ ଚିରି ଲେଖିଦେଇ )

ଡାକ୍ତର—ଅତି କମ୍‌ରେ ଅନୁମତି ମିଳିଲା ବେଳକୁ ଦୁଇ ତିନି ଦିନ ତ ଲାଗିବ । ଅତି ଶୀଘ୍ର ଯେପରି ଯାଇପାରନ୍ତି, ସେ ଚେଷ୍ଟା ମୁଁ କରିବି ।

ଶିବ—ଆପଣଙ୍କ ନିକଟରେ ମୁଁ ବଡ଼ କୃତଜ୍ଞ । ଆପଣଙ୍କ ଏ ଉପକାର-ଋଣ ଜୀବନରେ ପରିଶୋଧ କରିପାରିବି ନାହିଁ ।

ଡାକ୍ତର—( ହସି ) ନା ନା, ଆପଣ ଦେଶର ପୂଜ୍ୟ । ମୋର ପରମପୂଜ୍ୟ । ଆପଣଙ୍କ ନିମନ୍ତେ ଯଦି କିଛି କରିପାରେ ।

( ପ୍ରସ୍ଥାନ )

ଶିବ—ବୋଉ ! ବୋଉ ! ତୁ ମୋର ଏ ଦେହଟାକୁ ଦେବତାର ପୂଜାଫୁଲ ପରି ସେବା କରି କରି ହୃଦୟରେ ଧାରଣ କରି ରହିଥିଲୁ । ଅଧମ ମୁଁ, ତୋର ରୋଗଶଯ୍ୟା ପାଖରେ ମଧ୍ୟ ବସିପାରିଲି ନାହିଁ । ମନରେ ଆଶା ପୋଷିଥିଲି, ଭାବୁଥିଲି ତୁ ମୋତେ ଯେତେ ସେବାସମ୍ପଦ ଦେଇଥିଲୁ, ମୁଁ ଆହୁରି ଦଶ ଗୁଣ ସେବା କରି ମୋ ଜୀବନ ଧନ୍ୟ କରିବି ବୋଲି । ବୋଉ ! ତୋତେ ମୁଁ ଆଜି ଦେଖିପାରୁ ନାହିଁ ।

କେଉଁଠି ଅଛୁ ବୋଉ ! ଆହା, ବୋଉ ମୋତେ ନ ଦେଖି ଚାଲିଗଲା । ଆଉ ଫେରିବ ନାହିଁ । ଆଉ ସେ ମୋତେ ଶିବୁ ବୋଲି ଡାକିବ ନାହିଁ । ସଂସାର ମୋର ବୋଝଶୂନ୍ୟ ହୋଇଗଲା । ବୋଉ, ବୋଉ !

( ପତନ )

---

# ଚତୁର୍ଥ ଅଙ୍କ

## ଦ୍ୱିତୀୟ ଦୃଶ୍ୟ

ସ୍ଥାନ—ଶିବସୁନ୍ଦରଙ୍କ ବାସଗୃହ

( ପୀଡ଼ିତା ଶାନ୍ତ ଶାୟିତା, ପାର୍ଶ୍ୱରେ ଗାୟତ୍ରୀ )

ଗାୟତ୍ରୀ—( ମଥାରେ ହାତ ବୁଲାଇ, ଆବେଗରେ ) ବୋଉ !

ଶାନ୍ତ—( ଗାୟତ୍ରୀର ହସ୍ତ ଉଠାଉ ଉଠାଉ ନିଜ ହସ୍ତ ଶିଥିଳ ହୋଇ ଖସିପଡ଼ିଲା ) ଗାୟତ୍ରୀ ମା, ମା ମୋର !

ଗାୟତ୍ରୀ—ବୋଉ ! ଆପଣଙ୍କର ମୁଁ କିଛି ସେବା କରିପାରିଲି ନାହିଁ । ଯଦି ଭଲ ଔଷଧ ଟିକିଏ ଦେଇଥାନ୍ତି, ଜ୍ୱରଟା କମି ଯାଇଥାନ୍ତା ।

ଶାନ୍ତ—ଦେଶର ଶହ ଶହ ବୋଉ ଏହିପରି ଭଲ ଔଷଧ ବିନା ମରୁଛନ୍ତି । ସେ ଭିତରୁ ମୁଁ ଜଣେ ବୋଲି ଭାବିନେ ଗାୟତ୍ରୀ ମା !

ଗାୟତ୍ରୀ—ଏ ଦେଶର ଅତି ବଡ଼, ଅତି ମହତ୍ ବ୍ୟକ୍ତିଙ୍କ ମା ଆପଣ; ଆଉ ମୋର ଶାଶୁ ।

ଶାନ୍ତ—ମଙ୍ଗଳମୟୀ ! କଲ୍ୟାଣୀ ମୋର ! କି ସୁନ୍ଦର ନାମ ଦେଇ ଶିବୁକୁ ତୁ ଡାକିଲୁ ଗାୟତ୍ରୀ ମା ! ମୁଁ ଜାଣେ, ସେ ଏକ୍ଷଣି ଆସିବ ନାହିଁ । ମୁଁ ଚାଲିଗଲା ପରେ ସେ ଆସିଲେ କହିଦେବୁ—

ଗାୟତ୍ରୀ—(ଆବେଗରେ) କଣ କହିବ ବୋଉ ?

ଶାନ୍ତ—ମୋର ଶେଷ ସମୟରେ ଆସିପାରିଲା ନାହିଁ ବୋଲି ଶିବୁ ମୋର ଯେପରି କ୍ଷୋଭ ନ କରେ ।

ଗାୟତ୍ରୀ—ବୋଉ ! ବୋଉ ! ଆପଣ ମୋତେ ଏକାକରି ଛାଡ଼ିଦେଇ ଯାଆନ୍ତୁ ନାହିଁ । ମୁଁ ଯେ ନିତାନ୍ତ ଏକାକିନୀ ହୋଇଯିବି ବୋଉ !

ଶାନ୍ତ—( କ୍ଷୀଣ ହାସ୍ୟ ) ତୋର ଯେ ବଡ଼ ବନ୍ଧୁ ଆସିବ, ତାକୁ ନେଇ ତୁ ତୋର ଏ ପୁରୁଣା ବନ୍ଧୁକୁ ଭୁଲିଯିବୁ । ଶିବୁକୁ କହିବୁ—ମୁଁ ତାର ମୂର୍ତ୍ତିଟି ମୋ ହୃଦୟରୁ ମୁହୂର୍ତ୍ତେ ମଧ୍ୟ ଅନ୍ତର କରି ନାହିଁ । ମୋର ଆଶା ଥିଲା, ତୋର ସେ ନବୀନ ବନ୍ଧୁଟି ସହିତ ପରିଚିତ ହୋଇଥାନ୍ତି । ତାକୁ କହିଦେବୁ—

ଗାୟତ୍ରୀ—ବୋଉ ! ମୋର ବଡ଼ ଆଶା ଥିଲା, ଆପଣଙ୍କ ପୁଅ ବିଜୟୀ ହୋଇ ଫେରିଆସି ଆପଣଙ୍କୁ ପ୍ରଣାମ କରିବେ । ଆଉ ଆପଣ ସେଦିନ ଯେଉଁପରି ଗୃହ ଉପରେ ତାଙ୍କୁ ଆଉଜେଇ ଧରି ଆଦର କରୁଥିଲେ—ସେ ଦୃଶ୍ୟଟି ମୋର ବଡ଼ ପ୍ରିୟ ଦୃଶ୍ୟ । କଳ୍ପନା ଆଖିରେ ତ ନିତି ପ୍ରତିକ୍ଷଣରେ ଦେଖୁଛି ।

ଶାନ୍ତ—ସେ ଦୃଶ୍ୟ ଯେ ଆମର ଏ ହୃଦୟ ଭିତରେ ଅଙ୍କିତ ହୋଇ ରହିଛି । ତୋର ଆଶା ଯେ ଅତି ମହତ୍ ଗାୟତ୍ରୀ ମା ! ମହତ୍ ଆଶା କେବେ ବିଫଳ ହୁଏ ନାହିଁ । ମୋର

ଯେତେ ବଡ଼ କଳ୍ପନା ଥିଲା, ମୋ ଶିବୁ ସବୁ ସାର୍ଥକ କରି-ଦେଇଛି । ଭାବନ୍ତୁ ନାହିଁ ଗାୟତ୍ରୀ ମା, ତୋତେ ସାନ୍ତ୍ୱନା ଦେବାକୁ ଏସବୁ କହୁଛି ବୋଲି । ଶିବ ଯେ ସାଂସାରିକ ସକଳ ସୁଖ ମାନସିକ ବଳରେ ବର୍ଜନ କରିଦେଇ ଯାଇଛି, ଏଇ ଯେ ମୋ ପାଖକୁ ଆଜି ଆସିପାରି ନାହିଁ, ତାର ଏ ଦୁଃଖସହନଶୀଳତା କି ତୁଚ୍ଛ ହୋଇପାରେ ? ତାର ଏ ଅସାଧ୍ୟସାଧନର ଅପୂର୍ବ ପ୍ରୟାସ କେବେ ନିଷ୍ଫଳ ହେବ ନାହିଁ ଗାୟତ୍ରୀ ମା !

ଗାୟତ୍ରୀ—ବୋଉ ! ସେ ସାଫଲ୍ୟ ଦେଖିବାକୁ ଆପଣ ରହୁ ନାହାନ୍ତି ବୋଉ !

ଶାନ୍ତ—( ହସି ) ପାଗଳି ! ରହୁ ନାହିଁ ଯାଉଛି କେଉଁଆଡ଼େ ? ମୋର ଏ ଜୀର୍ଣ୍ଣ ଦେହଟା ସିନା ପାଉଁଶ ହୋଇଯିବ, ମୋର ଏ କଥା କି କେବେ ହଜିଯିବ ଗାୟତ୍ରୀ ମା ? ଶିବୁ ଯେଉଁ ମହତ୍ କର୍ମ ସାଧନ କରିବା ନିମନ୍ତେ ବାହାରିଛି,ସେ କର୍ମର ସ୍ମୃତି ଯେ ମନୁଷ୍ୟ ଜାତି ବଞ୍ଚିଥିବା ଯାଏ ଉଜ୍ଜ୍ୱଳ ହୋଇ ରହିଥିବ । ସେ କି ଦିନେ, ମସେ କମ୍ବା ବର୍ଷକର କଥା ! ଶିବୁ ଯେ ମୋର ଚିରକାଳର ମନୁଷ୍ୟ ।

ଗାୟତ୍ରୀ—ବୋଉ ! ଆପଣ ଆଶୀର୍ବାଦ ଦିଅନ୍ତୁ, ସେ ଫେରିଆସନ୍ତୁ, ଫେରିଆସନ୍ତୁ । ମୁଁ ଆଉ ସହ୍ୟ କରିପାରୁ ନାହିଁ ବୋଉ !

ଶାନ୍ତ—( ମଥାରେ ହାତ ରଖି ) ସେ ଜନ୍ମ ହେବାଠୁ ମୁଁ ତା ମଥାରେ ହାତ ରଖି ମନେ ମନେ ଶତ ସହସ୍ର ବାର ଭଗବାନଙ୍କୁ ଡାକୁଛି । ଆଉ ତାର ପାର୍ଶ୍ୱରେ ତୋତେ ହିଁ ରଖି

ଆଜିର ପରେ ମୋର ସବୁ ଶୁଭେଚ୍ଛା ଅଜାଡ଼ି ଦେଇଛନ୍ତି ସେଇ କଳ୍ପିତ ବଧୂଙ୍କ ମଥାରେ । ତୁ ମୋର ସେଇ ଗାୟତ୍ରୀ ।

ଗାୟତ୍ରୀ—ବୋଉ ! ମୋର ପୂର୍ବଜନ୍ମର ତପସ୍ୟା ବଳରେ ଆପଣଙ୍କ ପାଇ ସଂସାରର ସବୁ ଦୁଃଖ ସୁଖବେଗ କଥା ଭୁଲି ଯାଇ-ଥିଲି । ଆପଣ ମୋତେ କେତେ ବଡ଼ କରି ଦେଖୁଥିଲେ, ସେଇ କଥା ଭାବି ଭାବି ନିଜକୁ ନିଜେ ଅତି ବଡ଼ ଆସନରେ ବସାଇ ଦେଇଥିଲି । ମୁଁ ନିଜକୁ ଦେବୀର ଆସନରେ ବସାଇ ଆପଣଙ୍କ ପୁଅଙ୍କୁ ଦେବତା ରୂପେ ପୂଜା କରିଆସିଛି । ହୃଦୟର ଗଭୀର ଦୁଃଖ-ବେଦନାର ଅଶ୍ରୁ ଦେଇ ତାଙ୍କର ପାଦ ଧୋଇ ଦେଉଥିଲି ।

ଶାନ୍ତ—ମୁଁ ଜାଣେ ଗାୟତ୍ରୀ ମା ! ( ହାତ ବଢ଼ାଇ ) ହାତ ଦୁର୍ବଳ ହେଲଣି, ତୋର ପଦ୍ମନେତ୍ରରୁ ଅଶ୍ରୁ ପୋଛି ପାରୁ ନାହିଁ । ଛି, ମୋ ମା, ଶାନ୍ତ ହୋଇଯା ।

ଧୂର୍ଜଟି—( ପ୍ରବେଶ ଓ ପାଖକୁ ଆସି ) ଖୁଡ଼ି !

ଶାନ୍ତ—ଧୂର୍ଜଟି ! ଆସିଲୁ ! ମୁଁ କାଲିଠାରୁ ଭାବୁଛି ତୁମେ ନିଶ୍ଚୟ ଆସିବ ।

ଧୂର୍ଜଟି—ଖୁଡ଼ି ! ତୁମର ଭାବନା କି କେବେ ମିଥ୍ୟା ହୋଇପାରେ ? ତୁମେ ଯେ ଶିବର ବୋଉ । ଶିବ ଯେ ବନ୍ଦୀଘରେ ବସି ଆହ୍ୱାନଧ୍ୱନି ଦେଉଛି । ସେ ଧ୍ୱନିରେ ଦେଶର ମୋହନିଦ୍ରା ଭାଙ୍ଗି ଯାଇଛି ଖୁଡ଼ି ! ତୁମ ଧୂର୍ଜଟିର ମଧ୍ୟ ସେହ୍ନନରେ ଭାବନା ଅଳି ଆଉ ନାହିଁ । ଶିବଠାରୁ ସେଇ ଉଦ୍ଦୀପନ୍ତି ବାକ୍ୟର ଶକ୍ତି ପାଇ ମୋର ପାଷାଣ-ପ୍ରାଣ ତରଳି ଯାଇଛି ।

ଶାନ୍ତ—ତୁମର ସ୍ୱଭାବ ତ ନିଷ୍ଠୁର ନୁହେଁ ଧୂର୍ଜଟି ! ଶିବକୁ ସୁଖୀ କରିବା ନିମନ୍ତେ ତୁମେ ଯେତେ ଚେଷ୍ଟା କରିଛ, ସେ କଥା ମୁଁ କେବେ ଭୁଲିବି ନାହିଁ ।

ଧୂର୍ଜଟି—ତାକୁ ଦୁଃଖୀ କରିଦେବାକୁ ଚେଷ୍ଟା କରିଥିଲି ଖୁଡ଼ି ! ଏଇ ସେଦିନ ଦେଖିଲି,ଶିବର କାବ୍ୟ ପଢ଼ି ଗାଁ ଗାଁ ବୁଲି ଯଦୁ ରଥେ ଦାସକାଠିଆ ନାଚ କରି ଲୋକଙ୍କୁ ପ୍ରୋତ୍ସାହିତ କରିବା ଅପରାଧରେ ଜେଲକୁ ପ୍ରେରିତ ହେଲେ । ଅନ୍ୟ ସମୟରେ ଯଦୁ ବୁଢ଼ାର ନାଚ ଦେଖି ହସ ଆସନ୍ତା । କିନ୍ତୁ ସେଦିନ ତାଙ୍କର ସେ ଭାବବିହ୍ୱଳତା ଦେଖି ଦେହ ମୋର ରୋମାଞ୍ଚ ଉଠିଲା ।

ଶାନ୍ତ—କଣ, (ହସି) କଣ କହୁଛ ଧୂର୍ଜଟି ! ଯଦୁ ରଥେ ଦାସକାଠିଆ ବେଶରେ ନାଚ କରୁଛନ୍ତି !

ଧୂର୍ଜଟି—ତୁମେ ଯେ ହସିଲ ଖୁଡ଼ି, ସେଇ ମୋର ପରମଲାଭ । କିନ୍ତୁ କଥାଟା ତୁମକୁ କହିବା ଉଦ୍ଦେଶ୍ୟ ହସାଇବା ନୁହେଁ । ଶିବ କିଏ ଜାଣ ? ସେ ମହାପୁରୁଷ ଅବତାର । ସେ ଆମମାନଙ୍କ କୋଳରୁ ଯାଇ ଜନସମୁଦ୍ର ଭିତରେ ସନ୍ତରଣ କଲାଣି । ଆମ ଦେଶର ପୂର୍ବ ସଂସ୍କୃତି ଫେରାଇ ଆଣିବ ବିଦେଶୀ ହାତରୁ ।

ଶାନ୍ତ—( ଆବେଗରେ ) ମୋ ବାପ ! ମୋ ଶିବୁ !

ଗାପୁଣୀ—ବୋଉ ! ବୋଉ ! କଣ ହେଲା ? ଏଁ କଣ ଲାଗୁଛି ? ( କୁଣ୍ଢେଇ ଧରି ) ଧୂର୍ଜଟି ଭାଇ, ଦେଖ । ବୋଉଙ୍କର ବଡ଼ କଷ୍ଟ ହେଉଛି ।

ଧୂର୍ଜଟି—( ପାଣି ସିଞ୍ଚିଦେଇ ) ଖୁଡ଼ି ! ଖୁଡ଼ି !

ଗାପୁଣୀ—( ପଙ୍ଖା କରିବା ) ବୋଉ ! ବୋଉ !

ଶାନ୍ତ— ( ଆଖି ଖୋଲି ) ଧୂର୍ଜଟି !

ଧୂର୍ଜଟି—ଖୁଡ଼ି !

ଶାନ୍ତ—ମୁଁ ମରିଯାଉଥିଲି, ତୁମେ ଆସି ମୋତେ ବଞ୍ଚେଇ ଦେଲ ଧୂର୍ଜଟି ! ଗାୟତ୍ରୀ ମାକୁ ମୋର—

ଧୂର୍ଜଟି—ଖୁଡ଼ି ! ତୁମେ ବଡ଼ ଦୁର୍ବଳ ହେଲଣି । ଟିକିଏ ବିଶ୍ରାମ ନେଇଥାନ୍ତ—

ଶାନ୍ତ—ବିଶ୍ରାମ ତ ଏକାଥରକେ ନେବ ଧୂର୍ଜଟି ! କିନ୍ତୁ ଯେପର୍ଯ୍ୟନ୍ତ ଶେଷ ହୋଇ ନାହିଁ, ସେ ପର୍ଯ୍ୟନ୍ତ କଥା କହିବାକୁ ମତେ ଅନୁମତି ଦିଅ ଧୂର୍ଜଟି !

ଧୂର୍ଜଟି—ତୁମେ ଯେଉଁ କଥା କହିବାକୁ ଏତେ ବ୍ୟସ୍ତ ହେଉଛ, ତାହା ମୁଁ ଜାଣିଛି ଖୁଡ଼ି ! ଗାୟତ୍ରୀ ବର୍ତ୍ତମାନ ଯେଉଁ ସଙ୍କଟାପନ୍ନ ଅବସ୍ଥାରେ ଅଛି, ତାକୁ ମୁଁ ଏକା ଛାଡ଼ିଦେଇ ତ ଯିବ ନାହିଁ । ମାସେ ଛୁଟି ନେଇ ଆସିଛି ।

ଶାନ୍ତ—ବାପ ଧୂର୍ଜଟି ! (ଆସ୍ତେ ଆସ୍ତେ) ଭଗବାନ୍ ତୁମର ସକଳ କାମନା ସଫଳ କରନ୍ତୁ । ଓଃ ! (ବ୍ୟଥିତ ହୋଇ) ବାପ, ମୋତେ ସେଇ ଘର ଭିତରେ ନେଇ ଶୁଆଇଦିଅ, ଯେଉଁ ଘରେ ତୁମ କାକାଇ ଶେଷଦିନ ଶୋଇଥିଲେ । ସେଇ ଘରେ ଶିବୁ ମୋର ଜନ୍ମ ହୋଇଥିଲା ।

ଗାୟତ୍ରୀ—( ଶୋକାବେଗରେ ) ବୋଉ ! ବୋଉ ! ( ପ୍ରସ୍ଥାନ )

ଧୂର୍ଜଟି—ହଁ, ଖୁଡ଼ି ! ତୁମକୁ ମୁଁ ସେଇ ଘରେ ନେଇ ଶୁଆଇଦେବି । ମାଗୁଣି—ଏ ମାଗୁଣି !

ମାଗୁଣି—( ପ୍ରବେଶ ) ( ପାଖକୁ ଯାଇ ) ମା ! ମା !

ଧୂର୍ଜଟି—ଖଟ ଧର ମାଗୁଣି ! ଘର ଭିତରକୁ ନେଇଯିବା । ଖୁଡ଼ୀ କହୁଛନ୍ତି ବାରଣ୍ଡାଟା ଥଣ୍ଡା ଲାଗୁଛି ।

( ଦୁହେଁ ଦୁଇ ଦିଗରୁ ଧରି ପ୍ରସ୍ଥାନ )



# ଚତୁର୍ଥ ଅଙ୍କ

## ତୃତୀୟ ଦୃଶ୍ୟ

ସ୍ଥାନ—ରାସ୍ତା

ଚନ୍ଦ—( ପ୍ରବେଶ ) ମୋ ଚାଖଙ୍କୁ ଧୂର୍ଜ୍ଜଟି ମିଶ୍ର ଖବର ଦେଇଛନ୍ତି ଶବଦାହ କରିଯିବାକୁ ଯେ, ମୁଁ କାହିଁକି ଯିବ ?

ଗଦେଇ—( ପ୍ରବେଶ ) ଏଇ ତ ଚନ୍ଦ ମଉସା, ମୁଁ ତେଣେ ଖୋଜୁଥିଲି । ଚାଲ ଚାଲ । ବର୍ଷା ହେଇ ଆସିବ ।

ଚନ୍ଦ—( ଗଦେଇ ଗାମୁଛା ଟାଣି ପାନ ନେଇ ) ହଇରେ ଗଦେଇ ! ହାଡ଼ ପଠାଣ ଘରେ ପଶିଲେ, ପୁଅକୁ ଜେଲ୍‌କୁ ପଠାଇ ଦେଲେ । ଘରଦୁଆରୁ ଲକ୍ଷ୍ମୀ ଛାଡ଼ିଗଲା । ସେ ମାଗୁଣିଟା ଭିକ ମାଗୁଥିଲା, କହିଲୁ ଗଦେଇ, ତାକୁ ନେଇ ଘରେ ରଖିଲେ—

ଗଦେଇ—( ବିରକ୍ତ ହୋଇ ) ଦେଖ ପ୍ରତିମାକୁ ଅଗ୍ନିରେ ଦହନ କରିଯିବ । ସେ କଥା ତୁମେ ଭାବୁ ନାହିଁ ମଉସା, ଆଉର ବାଛ ବିଚାର କରି ବସୁଛ ।

ଚନ୍ଦ—ତୁ ଯଦି ଡାକିବୁ ନ ଯିବି କି ? ଶୁଣ୍ ମ, ହଇରେ ଗଦେଇ ! ସତ କହିଲୁ, ଆମର ଆଚାର ନିଷ୍ଠାଟା ଆମ ଘର ଭିତର କଥା । ତୁଆଁ ତୁଇଁ ଭଲ ମନ୍ଦ ଆମେ କଣ ମାନୁଛୁ କି ? ଘରର ଶାସ୍ତ୍ର ଘରଣୀ ହାତରେ । ମନୁ, ପରାଶରଙ୍କ ସ୍ମୃତି-ସଂହିତା କଥା କହିଲେ ମଧ୍ୟ ସେମାନେ ମାନିବେ ନାହିଁ ।

ଗଦେଇ—ହଁ ହେ, ଶାସ୍ତ୍ର, ମନୁ, ପରାଶର କେତେ କଥା କହି ହେଉଛ । କେଉଁଠୁ ଏ ମନୁ, ପରାଶରଙ୍କ ନାଁ ଶୁଣିଲ ? ଆଉ ସ୍ମୃତି ସହିତାର ଅର୍ଥଟା ଠିକଏ ବୁଝେଇଦେଲ !

ଚନ୍ଦ—ଆରେ—ଦେଖ, ଶୁଣ ଗଦେଇର କଥା, ଲୋକମୁଖରୁ ଶୁଣି କହିଦେଉଛୁ ବୋଲି ଅର୍ଥ ପଚାରିଲେ କହିଦେବ ?

ଗଦେଇ—କହୁ ଜାଣି ନାହିଁ ଯଦି ବୃଥା ବକର ବକର ହେଉଛ କାହିଁକି ? ଜୀବନରେ ତ କୌଣସି ଭଲ କାର୍ଯ୍ୟ କର ନାହିଁ । ଆଜିର ଏଇ ବଡ଼ କାର୍ଯ୍ୟଟି କର, ମଲାବେଳକୁ ମନେ ପଡ଼ିବ ଜଣକର ଅସମୟରେ ସାହାଯ୍ୟ କରିଥିଲ ବୋଲି ।

ଧୂର୍ଜଟି—( ପ୍ରବେଶ ) ଗଦାଧର !

ଗଦେଇ—ଏଇ ଦେଖନ୍ତୁ ଆଜ୍ଞା, ଆପଣ କହିଲେ ଚନ୍ଦ ମଉସାକୁ ଡାକି ଆଣ୍ ବୋଲି—

ଚନ୍ଦ—( ଘାବରେଇ ) ( ସ୍ୱଗତ ) ଶୁଣିଥିଲି ଯାଙ୍କର ଖୁଡ଼ୀଙ୍କ ସହିତ ମନୋମାଳିନ୍ୟ ଘଟିଛି ବୋଲି । ଠିକ୍ ସମୟକୁ ଆସି ପହଞ୍ଚି ଯାଇଛନ୍ତି । ଯାଙ୍କ ବାପା ମୋର ବଲ ଖଣ୍ଡିକ ବନ୍ଧକ ରଖିଛନ୍ତି । ଯାଙ୍କ କଥା ନ ଶୁଣିବାକୁ ମୋର ଉପାୟ ନାହିଁ ।

ଗଦେଇ—ମଉସା ! ଏ ଚନ୍ଦ ମଉସା ! ତୁମେ ଯିବ କି ନାହିଁ କହିଲ ?

ଧୂର୍ଜଟି—ଗଦାଧର ! ସେ ଯିବେ ନାହିଁ, ତୁ ଆ, ଆମେ ଦୁହେଁ ତ ଅଛେ, ମାଗୁଣି ଅଛୁ ।

ଚନ୍ଦ—( ସ୍ୱଗତ ) ହୁସେନ ଖାଁ ମଧ୍ୟ ଅଛୁ । ( ପ୍ରକାଶ୍ୟେ ) ( ଅଗ୍ରସର ହୋଇ ) ଆହା ତୁମେ ଧୂର୍ଜଟି, ତୁମେ କେଡ଼େ ବଡ଼ ଲୋକ । ଆହା, ଆପଣଙ୍କ କଥା ଅମାନ୍ୟ କରିବାକୁ

ମୋର ଶକ୍ତ କାହିଁ ? ସ୍ଥିର ଚନ୍ଦ ଶତପଥୀ ମୁଁ । ( ହାତଯୋଡ଼ି ଅତି ବିନମ୍ରରେ ) ଖାଲି ମୋର ସେ ଭୂମି ଖଣ୍ଡ କ—ତୁମ ନନା ଶୁଣୁ ନାହାନ୍ତି ବାବୁ, ଆପଣ ବଡ଼ଲୋକ, ମୁଁ ସ୍ଥିର—

ଧୂର୍ଜଟି—( ଭ୍ରୂକୁଟି ) ତୁମେ ଏଇ ସୁଯୋଗରେ ତୁମ ଭୂମି କଥା କହିବାକୁ ଆସିଛ । ଏତେ ସଙ୍କୀର୍ଣ୍ଣମନା ତୁମେ ! ଗଦାଧର, ଚାଲ ! ଶୁଣନ୍ତୁ ଶତପଥିଏ, ଆପଣ ପନ୍ଥରେ ଅନୁରୋଧ କଲେ ମଧ୍ୟ ମୁଁ ସେ ଶବକୁ ଆପଣଙ୍କୁ ସ୍ପର୍ଶ କରିବାକୁ ଦେବି ନାହିଁ । ( ପ୍ରସ୍ଥାନ ) ( ଗଦାଧର ପ୍ରସ୍ଥାନ )

ଚନ୍ଦ—ମୋର ସ୍ୱଭାବ ସେଇପରି । "ପଳାଉଥିଲେ ଗୋଡ଼ାଉଥିବ" ବୋଲି କଥା ଅଛି । ଯାଉଛି ଗୋଡ଼ ହାତ ଧରି କୌଣସି-ମତେ ଧୂର୍ଜଟି ମିଶ୍ରଙ୍କୁ ସମ୍ମତ କରାଇବି । ପରେ ଜମି ଖଣ୍ଡିକର କଥା କହିଲେ ଭଲ ହୋଇଥାନ୍ତା । ମୂର୍ଖ ତ ନଟେଜ, ଆଉ କାହାକୁ କହିବ ? ( ପ୍ରସ୍ଥାନ )

---

# ଚତୁର୍ଥ ଅଙ୍କ

## ଚତୁର୍ଥ ଦୃଶ୍ୟ

ସ୍ଥାନ—କାରାକକ୍ଷ । ସମୟ—ରାତି

ଶିବ—ମନେ ପଡ଼ୁଛି, ବୋଉ ମୋତେ ଦିନେ ହସି ହସି ପଚାରି-ଥିଲା—ପୁଅ ଜନ୍ମ ହେଲେ କି ନାମ ଦେଇ ଡାକିବ ? ମୁଁ ମୋର ମନର ଭାବନାଟି ବ୍ୟକ୍ତ କରି ଦେଇଥିଲି—ସ୍ୱରାଜ ହିଁ ମୋର ସନ୍ତାନ ।

ପ୍ରହସ୍ତ—( ପ୍ରବେଶ ) ଆଜ୍ଞା ! ଆପଣ ଆଉ କଣ ଲେଖିଛନ୍ତି ? ବନବାସୀମାନେ ବାରମ୍ବାର କହୁଛନ୍ତି । ଆଜି ସେ ଫେରିଆସିଲେ କେଉଁଠାରୁ ।

ଶିବ—( ବିଷାଦ ଭାବରେ ) ଲେଖିବାକୁ ଆଉ ଲେଖନୀ ଚାଲୁନାହିଁ ନାହିଁ ସ୍ୱପ୍ନେଶ୍ୱର ଭାଇ !—

ପ୍ରହସ୍ତ—ବନବାସୀମାନେ କହୁଛନ୍ତି, ଆପଣଙ୍କର ସେ ଋତୁବର୍ଣ୍ଣନା କାବ୍ୟ ଅକ୍ଷର ନ ଜାଣିବା ଗ୍ରାମ୍ୟଲୋକ ମଧ୍ୟ ବୁଝିପାରୁଛନ୍ତି । ବଡ଼ ମର୍ମସ୍ପର୍ଶୀ ହୋଇଛି ନା ଆଜ୍ଞା !

ଶିବ—( ସ୍ୱଗତୋକ୍ତି କଲା ପରି ) ବୋଉ ହୁଏତ ମୃତ୍ୟୁଶଯ୍ୟାରେ ଶୋଇଥିବ—

ପ୍ରହସ୍ତ—( ସ୍ୱଗତ ) ଆଜି ମୁଖକାନ୍ତି ଶୋକପୀଡ଼ିତ ଦିଶୁଛି ! ପଦେ ହେଲେ କଥା କହି ପାରୁ ନାହାନ୍ତି ।

ଶିବ—( ସ୍ୱଗତ ) ନିର୍ବାସିତ ବ୍ୟକ୍ତି ମୁଁ, କୌଣସି ମନୁଷ୍ୟ ସହିତ ବନ୍ଧୁତ୍ୱ ସମ୍ପର୍କ କରିବା ଅଧିକାର ମୋର ନାହିଁ ।

ପ୍ରହସ୍ତ—( ସ୍ୱଗତ ) କୌଣସି ଅଶୁଭ ସମ୍ବାଦରେ ବିଚଳିତ ହୋଇଥିବା ଅନୁମାନ ହେଉଛି । ( ଅଗ୍ରସର ହୋଇ ) ( ପ୍ରକାଶ୍ୟେ ) ଆଜ୍ଞା ! ଆପଣ ଆଜି ବଡ଼ ବ୍ୟଥିତ ।

ଶିବ—( ଆବେଗରେ ) ପ୍ରହସ୍ତ !

ପ୍ରହସ୍ତ—ମୁଁ ପ୍ରହସ୍ତ ନୁହେଁ, ପ୍ରହସ୍ତ ତାର ସେ କକ୍ଷରେ ନିଦ୍ରିତ ଅଛି । ମୁଁ ଆପଣଙ୍କର ସ୍ୱପ୍ନେଶ୍ୱର ଭାଇ । ମୋ ଦେହଠାରୁ ମୋ ଆତ୍ମାକୁ ଗୋଟିଏକର ଧରି ଆସିଛି ଆପଣଙ୍କ ପାଖକୁ ।

ଶିବ—( ଗଭୀର କରୁଣ ଦୃଷ୍ଟିରେ ଚାହିଁ ) ତୁମେ କର୍ତ୍ତବ୍ୟନିଷ୍ଠ କାର୍ଯ୍ୟପ୍ରହସ୍ତ ।

ପ୍ରହରୀ—ଆପଣ ମୋତେ ସେଇ ପ୍ରଥମ ଦିନ ସକାଳେ ଡାକିଲେ
ଚିର ସ୍ୱପ୍ନେଶ୍ୱର ଭାଇ ବୋଲି ଡାକନ୍ତୁ । ( ଆବେଗରେ )
ଆମେ—ଆମେ ଦୁହେଁ ଯେ ଏଇ ମାଟିରେ ଜନ୍ମ ହୋଇଛେ ।
ଡାକନ୍ତୁ, ( ହାତ ଧରି ) ଡାକନ୍ତୁ ଆଉ ଥରେ ।

ଶିବ—ବନ୍ଦୀ ମୁଁ, ଅପରାଧୀ ମୁଁ, ନିର୍ବାସିତ ମୁଁ ! ଜନ୍ମଦାତ୍ରୀର
ମୃତ୍ୟୁଶଯ୍ୟାରେ ତାର ପଦସେବା କରିବା ଆନନ୍ଦରୁ ବଞ୍ଚିତ,
ଆଉ ତୁମେ କର୍ତ୍ତବ୍ୟନିଷ୍ଠ କାରାରକ୍ଷୀ । ତୁମକୁ ଭାଇ ବୋଲି
ଡାକିବା ଅଧିକାର ମୋର ନାହିଁ ପ୍ରହରୀ !

( ପ୍ରଥମ ପ୍ରହରର ସତର୍କଧ୍ୱନି ଶୁଭିଲା )

ପ୍ରହରୀ—( ସ୍ୱଗତ ) ବାହାର ଜଗୁଆଳ ସତର୍କ କରିଦେଲାଣି ।

ଶିବ—ସ୍ୱପ୍ନେଶ୍ୱର ଭାଇ ! ନା-ନା ! ତୁମେ କର୍ତ୍ତବ୍ୟନିଷ୍ଠ
କାରାରକ୍ଷୀ, ଆଉ ମୁଁ ଅପରାଧୀ । ମୁଁ ତୁମର ଭାଇ ହୋଇ-
ପାରିବ ନାହିଁ ସ୍ୱପ୍ନେଶ୍ୱର !

ପ୍ରହରୀ—କହନ୍ତୁ ମୋତେ ଆପଣଙ୍କର କି ଦୁଃଖ ଅଛି—

ଶିବ—ଦେଖ ସତର୍କଧ୍ୱନି, ସତର୍କଘଣ୍ଟା ଧ୍ୱନିତ ହେଉଛି । ତୁମେ
ତୁମର କର୍ତ୍ତବ୍ୟ ପାଳନ କର ରକ୍ଷୀ !

ପ୍ରହରୀ—( ସ୍ୱଗତ ) ଆଜି ମୁଁ ପରାଧୀନ ଦେଶର କାରାରକ୍ଷୀ ।
ନିରପରାଧ ପ୍ରତି ନିଷ୍ଠୁର ଆଚରଣ ହିଁ ମୋର ଦୈନନ୍ଦିନ
କର୍ମ । ( ପ୍ରକାଶ୍ୟେ ) ( ପାଦତଳେ ପଡ଼ିଯାଇ ) ହେ
ଦେଶାଧିପତି ! ହେ ହୃଦୟାଧିପତି, ଆଦେଶ ଦିଅନ୍ତୁ—
ଉଦ୍‌ବୋଧନା ବାଣୀ ଶୁଣାନ୍ତୁ । ପ୍ରେରଣା ଦିଅନ୍ତୁ ପ୍ରଭୁ !
ଆଜି ହିଁ ମସାଳର ସକଳ ବନ୍ଧନ ଛିନ୍ନ କରି ବାହାରି ପଡ଼ିବ
ଆପଣଙ୍କର ପଦାଙ୍କ ଅନୁସରଣ କରି ।

ଶିବ—( ଆବେଗରେ ଉଠାଇ ହାତ ଧରି ) ସଂସାର ବନ୍ଧନ ଛିନ୍ନ କର ନାହିଁ ସ୍ୱଦେଶ୍ୱର ଭାଇ ! ଗୃହଧର୍ମପାଳନ ସୁଖରୁ ବଞ୍ଚିତ ହୁଅ ନାହିଁ । ସେ ବନ୍ଧନ ଛିନ୍ନ କରିବାର ବିପୁଳ ପ୍ରୟାସ କରି ମୋର ହୃଦୟତନ୍ତ୍ରୀ ଯେ ଛିନ୍ନ ହୋଇଯାଉଛି । ମୁଁ ଆଜ ମାତୃସେବା ରୂପ ମହାକର୍ତ୍ତବ୍ୟରୁ—

ପ୍ରହରୀ—ଆପଣ ବଞ୍ଚିତ ହୋଇ ନାହାନ୍ତି ପ୍ରଭୁ ! ଆପଣ ଯେ ଦେଶ-ମାତୃକାର ପଦତଳେ ପ୍ରାଣ ଅର୍ପଣ କରି ଦେଇ କ୍ଷୁଦ୍ର ବନ୍ଧନ ଭିତରୁ ଆସି ବୃହତ୍ ବନ୍ଧନ ଭିତରେ ଆମ୍ଭାକୁ ଆବଦ୍ଧ କରି ରଖିଛନ୍ତି ।

ଶିବ—ଏ କିଛି ନୁହେଁ ସ୍ୱଦେଶ୍ୱର ! ଏ କେବଳ କଳ୍ପନା-ପୀୟୂଷ । ସ୍ୱରାଜସାଧନ ମୋ ପକ୍ଷେ ସୁଦୂର ପ୍ରାପ୍ୟ ।

ପ୍ରହରୀ—ମାତୃବିଚ୍ଛେଦର ପୀଡ଼ା ଆପଣଙ୍କୁ ସଂଶୟୀ କରିଦେଇଛି ପ୍ରଭୁ ! ନା, ନା, ନା, ଆପଣଙ୍କ ହୃଦୟରେ ଅପତ୍ୟସ୍ନେହ ଚିନ୍ତାର ଅବକାଶ ନ ଥିଲା ମହାରାଜ ! ଆପଣଙ୍କର ଶୁଚି ଶୁଭ୍ର ହୃଦୟ-ଶତଦଳ ଉପରେ ସଂଶୟର ଦାଗ ତ କେବେ ଦେଖି ନ ଥିଲି—

ଶିବ—(ଆବେଗରେ) ସ୍ୱଦେଶ୍ୱର ! ଭାଇ ! ତୁମେ ମୋ ଦେଶର କର୍ତ୍ତବ୍ୟପରାୟଣ ସେବକ । ତୁମର ଏହି ଦୃଢ଼ ନିଷ୍ଠାର ପଦତଳେ ମୋର ଉଚ୍ଚ ଚିନ୍ତାଧାରା ପ୍ରବାହିଣୀ ମସ୍ତକ ନତ ହୋଇଯାଇଛି ଭାଇ ! ତୁମେ ମୋର ଆଖି ଆଗରୁ ସଂଶୟ-ଅନ୍ଧକାରର ଗାଢ଼ ଆବରଣ ଉନ୍ମୋଚନ କରିଦେଇଛ । ବୋଉ, ବୋଉ, ଦେଖିଯା ତୋ ଦେଶର ପ୍ରକୃତ ସେବକ ସନ୍ତାନକୁ ।

ପ୍ରହରୀ—(ହାତ ଧରି) ଆବେଗ ସମ୍ଭାଳି ଯାଆନ୍ତୁ ଅଜ୍ଞା, ସୁକୁମାର ଶରୀର ଶୀର୍ଣ୍ଣ ହେଲଣି । ଚାଲନ୍ତୁ, ଆପଣଙ୍କୁ ମୁଁ ଶୁଆଇ ଦେଇ ଯିବି । (ହାତ ଧରି ପ୍ରସ୍ଥାନ)

---

# ପଞ୍ଚମ ଅଙ୍କ

## ପ୍ରଥମ ଦୃଶ୍ୟ

(ଆସନ୍ନପ୍ରସବା ଗାୟତ୍ରୀ ଶାୟିତା । ପାର୍ଶ୍ୱରେ ଚଉକିରେ ଧୂର୍ଜଟି । )

ଗାୟତ୍ରୀ—(ହସି) ପୁଅର କଣ ନାଁ ଦେବ କହୁ ନାହଁ ଧୂର୍ଜଟି ଭାଇ !

ଧୂର୍ଜଟି—ପ୍ରଥମେ ପୁଅ ଜନ୍ମ ହେଉ, ତା ପରେ ପୁଅର ନାମ କଥା ବିଚାର କରାଯିବ ।

ଗାୟତ୍ରୀ— (କେସି ଦେଇ) ଏଇ କେତେ ସମୟ ହେଲ ପୁଅର ଗୋଟାଏ କଳ୍ପିତ ମୂର୍ତ୍ତି ଦେଖି ଦେଖି ବୋଉଙ୍କୁ ଭୁଲି ଯାଇଥିଲି ଧୂର୍ଜଟି ଭାଇ ! ଏ ଘରେ ଆଜି ବୋଉ ନାହାନ୍ତି । ବୋଉଙ୍କ ଦେହାନ୍ତ ହୋଇଗଲା । ବୋଉଙ୍କର ସେ ସ୍ନେହସିକ୍ତ କଥାଗୁଡ଼ିକ କାନ ପାଖରେ ଧ୍ୱନିତ ହେଉଛି । ମନେ ହେଉଛି—

ଧୂର୍ଜଟି—ତାର ଦେଜାଘରେ ବସି ବିଷ୍ଣୁ ସହସ୍ରନାମ ପଢ଼ୁଛି । ମୋର ମନେ ହେଉଛି ଖୁଡ଼ୀଙ୍କର ଯେଉଁ ବୋଧଶକ୍ତି ଟିକକ ଥିଲ, ସେ ଶକ୍ତିଟି ଏ ଘରେ ରହିଛି ।

ଗାୟତ୍ରୀ—(ଶୋଇପଡ଼ି) ଓଃ !

ଧୂର୍ଜଟି—ବଡ଼ କଷ୍ଟ ହେଉଛି ନା ଗାୟତ୍ରୀ ?

ଗାୟତ୍ରୀ—ଆଜି ଅଣାଚର ଅନେକ କଥା କଥା ମନେ ପଡ଼ୁଛି । ବୋଉ, ବାପା, ଗୌରୀ ନାନୀ, ବ୍ରଜ ଭାଇ, ଭୁବନ ଭାଇ, ଆଦିତ୍ୟ ଭାଇ । ସବଶେଷର ସନ୍ତାନ ମୁଁ । ବୋଉ ମୋତେ ବଡ଼ ସ୍ନେହ ସୋହାଗରେ ବଢ଼ାଇଥିଲ । ଆଚ୍ଛା—

ଧୂର୍ଜଟି—କଣ ପଚାରୁଛୁ ଗାୟତ୍ରୀ ?

ଗାୟତ୍ରୀ—ନା ଥାଉ, ମୁଁ ତାର କଥା ମାନିଲି ନାହିଁ । ମୋ ଉପରେ ରାଗ କରିବା ତ ଉଚିତ । ବୋଉର କଥା କହୁଥିଲି ଧୂର୍ଜଟି ଭାଇ !

ଧୂର୍ଜଟି— ସେସବୁ ଭାବି ମନ ଖରାପ କର ନାହିଁ ଗାୟତ୍ରୀ !

ଗାୟତ୍ରୀ—ମୁଁ ବଡ଼ ଅବାଧ୍ୟ ନା ଧୂର୍ଜଟି ଭାଇ ! କିନ୍ତୁ ମୁଁ କଣ କରିବି ? ମୋର ବିଗ୍ରର ବିବେଚନା ହିଁ ମୋତେ ଅବାଧ୍ୟ କରିଦେଇଛି । ବୋଉଙ୍କୁ ଛାଡ଼ି ଏ ଘର ଛାଡ଼ି ଯିବାକୁ ମୁଁ ମୋର ହୃଦୟ-ଦେବତାଙ୍କ ଅନୁମତି ପାଇଲି ନାହିଁ । ମୋର ଅସମ୍ମତିରେ ମୁଁ କ୍ଷଣକ ନିମନ୍ତେ ମଧ୍ୟ ଭାବିପାରୁ ନାହିଁ ମୁଁ ଏ ଘରୁ ଯାଇ ଅନ୍ୟ ସ୍ଥାନରେ ରହିଥାନ୍ତି । ମୋର ମନେ ହେଉଛି ଏ ଘରଟି ମୋର ସବଶ୍ରେଷ୍ଠ ତୀର୍ଥଭୂମି ।

ଧୂର୍ଜଟି—ଏଇ ଦେବତ୍ତ୍ୱ ହିଁ ତ ମନୁଷ୍ୟକୁ ଚିରଜୀବୀ କରି ରଖେ ଗାୟତ୍ରୀ ! ତୁ ଯେ ତୋର ସନ୍ତାନର ଶ୍ରେଷ୍ଠ ଆଦର୍ଶ ରୂପେ ପ୍ରତିଷ୍ଠା ପାଇବୁ ଗାୟତ୍ରୀ ! ତୋ ପୁଅ ତୋର ଏ ଆଦର୍ଶରେ ଅନୁପ୍ରାଣିତ ହୋଇ ମନୁଷ୍ୟଜୀବନ ସାର୍ଥକ କରିବ ଗାୟତ୍ରୀ !

ଗାୟତ୍ରୀ—(ଆବେଗରେ) ବୋଉ ନାହାନ୍ତି, ପୁଅକୁ ଆଉ କିଏ ଆଦର କରିବ ଧୂର୍ଜଟି ଭାଇ !

ଧୂର୍ଜଟି—(ଆବେଗରେ) ଖୁଡ଼ୀ ଯେ ଆମ୍ଭମାନଙ୍କ ଭିତରେ ବଞ୍ଚି ରହିଛ ଗାୟତ୍ରୀ !

ଗାୟତ୍ରୀ—(ପୀଡ଼ିତ ଭାବରେ) ଓଃ, ସୂର୍ଯ୍ୟ ଅସ୍ତ ହୋଇଗଲେଣି, ଆଜ ସମସ୍ତ ଜାଣିପାରୁ ନାହିଁ । ଏବେଣି ରାତି କ ଦିନ କଣ୍ଟି ଏପର୍ଯ୍ୟନ୍ତରୁ ନାହିଁ ।

ଧୂର୍ଜଟି—(ପିଠରେ ମଥାରେ ହାତ ବୁଲାଇ) କଥା କହି କହି ମ୍ଳାନ ହୋଇଗଲୁଣି । ଟିକଏ ବିଶ୍ରାମ ନେ ଗାୟତ୍ରୀ !

ଗାୟତ୍ରୀ—ଆଜ ଭାଦ୍ରମାସର ଶୁକ୍ଳ ଦ୍ୱାଦଶୀ । ଆଜ ତୁମ ଭାଇଙ୍କର ଜନ୍ମଦିନ ।

ଧୂର୍ଜଟି -(ହସି) ଆଜ ଶିବର ଜନ୍ମଦିନ ! ବଡ ଶୁଭଦିନ ଆଜ । ଶିବର ପୁଅ ସଚ୍ଚିଦାନନ୍ଦ ଜନ୍ମ ହେବ ଆଜ ।

ଗାୟତ୍ରୀ—( ବସିବାକୁ ଚେଷ୍ଟା କରି, ଆମୋଦରେ) ଜନ୍ମ ହେଲ୍ ପରେ ନାଁ ଦେବ ବୋଲି କହିଥିଲ । ଏଇ ତ ସୁନ୍ଦର ନାମଟି ବାଛିଲ ଧୂର୍ଜଟି ଭାଇ !

ବିଦୁ—(ପ୍ରବେଶ) (ଦୁଧ ଦେବା)

ଗାୟତ୍ରୀ—(ଦୁଧ ପିଇସାରି) ମୋର ଶୋଇବାଘରେ ବିଛଣାଟା କରିଦେ । ମୁଁ ସେଇ ଘରେ—

ବିଦୁ—ବିଛଣା ତ କରିଦେଇଛି ବୋହୂମା ! (ପ୍ରସ୍ଥାନ)

ଗାୟତ୍ରୀ—ବୋଉ କହିଥିଲେ ତାଙ୍କ ପୁଅ ଯେଉଁ ଘରେ ଜନ୍ମ ହୋଇଥିଲେ, ସେଇ ଘରେ ତାଙ୍କ ନାତି ଭୂମିଷ୍ଠ ହେବ । ମୋ ହାତଟା ଟିକଏ ଧରିଦିଅ ଧୂର୍ଜଟି ଭାଇ ! (ଉଠି) ଆସ୍ତେ ଆସ୍ତେ କରି ସେ ଘରକୁ ଚାଲିଯିବ ।

ଧୂର୍ଜଟି—(ହାତ ଧରି ନେଇ ନେଇ) ସୁବୋଧ ଡାକ୍ତରଙ୍କ ପାଖକୁ ଟେଲିଗ୍ରାମ କରିଛୁ । ଗାଡ଼ି ସମୟ ହୋଇଗଲାଣି, ଆସିଯିବେ ଏହିକ୍ଷଣି । ତୁ କିଛି ବ୍ୟସ୍ତ ହେବୁ ନାହିଁ । ସବ୍‌-ଶୁଭରେ ସଚ୍ଚିଦାନନ୍ଦ ଆସିଯିବ ।

ଗାୟତ୍ରୀ—ତୁମ ଭାଇ ଟେଲିଗ୍ରାମ ଦେଇଥିଲେ, ବୋଧହୁଏ ଅନୁମତି ପାଇ ନାହାନ୍ତି ।

ଧୂର୍ଜଟି—ହନ ଗୋଲମାଲଯାକ ଅଛି । ଶିବ ଆଜି ନିଶ୍ଚୟ ଆସିବ । ସେ ଆସିବା କଥା ଭାବିଲେ ଉତ୍ତେଜନାରେ ତୋର ଦେହ ଗୋଲମାଲ ଯାକ ଥରୁଛି । ଚାଲ ଶୁଆଇଦେବ । (ଦୁହେଁ ପ୍ରସ୍ଥାନ,

ଡାକ୍ତର—(ଗୃହଆଡ଼କୁ ଗୃହିଁ) ଏଇ ଘରଟା ତୋଲି ତ ସେ ଲୋକଟି କହିଲା । କାହିଁ କେହି ତ ନାହାନ୍ତି ! ଧୂର୍ଜଟିବାବୁ ! ହୋ ଧୂର୍ଜଟି !

ଧୂର୍ଜଟି—(ପ୍ରବେଶ) (ଆବେଗରେ) ସୁବୋଧ ! ତୁମର ଏ ଋଣ ପରିଶୋଧ କରିପାରିବି ନାହିଁ । ଗାୟତ୍ରୀ ଯେ କି ସଙ୍କଟାପନ୍ନ ଅବସ୍ଥାରେ ଅଛି, ସେ କଥା କହିପାରୁ ନାହିଁ । ମୋତେ ଏ ବିପଦରୁ ରକ୍ଷାକରିବା ନିମନ୍ତେ ତୁମେ ଦେବତା ହୋଇ ସ୍ୱର୍ଗରୁ ଓହ୍ଲାଇ ଆସିଲ ସୁବୋଧ ! କଣ ବୋଲି ଧନ୍ୟବାଦ ଦେବି ?

ସୁବୋଧ—ଆଗେ ରୋଗୀକୁ ଦେଖାଅ, ପରେ ସ୍ତବସ୍ତୁତି କରିବ ।

ଧୂର୍ଜଟି—ନା ସୁବୋଧ, ମୁଁ କେତେଦୂର ଯେ ଆତୁର ହୋଇ ଅପେକ୍ଷା କରିଥିଲି, ତୁମେ ବୁଝିପାରିବ ନାହିଁ ।

ଗାୟତ୍ରୀ—(ଭିତରୁ) ଧୂର୍ଜଟି ଭାଇ !

ଧୂର୍ଜଟି—ଚାଲ ସୁବୋଧ, ଗାୟତ୍ରୀ ଡାକିଲାଣି ।

———

# ପଞ୍ଚମ ଅଙ୍କ

## ଦ୍ୱିତୀୟ ଦୃଶ୍ୟ

ସ୍ଥାନ—ରେଲଷ୍ଟେସନ

(ଗାଡ଼ି ପ୍ରବେଶ କଲା ଷ୍ଟେସନରେ । ଗାଡ଼ିରେ ବସିଥିଲେ ଶିବସୁନ୍ଦର । ଯାତ୍ରୀମାନେ ଗାଡ଼ିରୁ ଓହ୍ଲାଇଲେ । ଅନ୍ୟମାନେ ବସିବା ଉଦ୍ୟମ କରୁଛନ୍ତି । ବକାକଣା ଚାଲିଥିଲା )

ଶିବ—(ବ୍ୟଥିତ ଭାବରେ) ଜେଲ ଡାକ୍ତର ମୋର ଯାହା ଉପକାର କରି ଦେଇଛନ୍ତି, ସେଥିରେ ମୁଁ ଋଣୀ ହୋଇ ରହିଗଲି । ତାଙ୍କରି ଦୟାରୁ ତ ଆଜି ବୋଉକୁ ଦେଖିବାକୁ ଯାଉଛି । ବୋଉ ହୁଏତ ମୃତ୍ୟୁଶଯ୍ୟାରେ ଶାୟିତା ଥିବ । ମୋତେ ଦେଖି ଆବେଗ ଉତ୍ତେଜନାରେ କଣ୍ଠରୋଧ ହୋଇଯିବ । ଆଜି ଗୋଟାକଯାକ ଦେହରେ ବୋଉ ଧ୍ୱନି ବ୍ୟାପିଯାଇଛି । ଗାୟତ୍ରୀ ! ତା ହାତର ପରଶ ଲାଗି ମୋ ଦେହ ପୁଲକ ଉଠୁଛି । ପ୍ରେମର ପ୍ରତିମା, ମୂର୍ତ୍ତିମନ୍ତ ଭକ୍ତି-ରୂପିଣୀ ।

(ଗାଡ଼ି ଷ୍ଟେସନ ଛାଡ଼ିଲା । ଗାଡ଼ି ଚାଲିଛି, ଦୂରକୁ ଦୂରକୁ ଚାଲିଯାଉଛି ଗାଡ଼ି ।)

———

# ପଞ୍ଚମ ଅଙ୍କ

## ଶେଷ ଦୃଶ୍ୟ

ସ୍ଥାନ—ଶିବସୁନ୍ଦରଙ୍କ ବାସଭବନ

ଡାକ୍ତର—(ପ୍ରବେଶ)

ଭିତରୁ—(ଶିଶୁର କ୍ରନ୍ଦନ)

ଡାକ୍ତର—କି ସୁନ୍ଦର ହୋଇଛି, ଓଜନ ଅଛି ଆଠ ପାଉଣ୍ଡ । ଯାହାହେଉ ଭଗବାନଙ୍କ କୃପାରୁ ସବୁ ଭଲରେ ହୋଇଗଲା ।

ଧୂର୍ଜଟି—(ପ୍ରବେଶ) ସୁବୋଧ, ତୁମର ଏ ମହା ଉପକାର—

ଡାକ୍ତର—(ହସି) ପୁଅଟି କପରି ସୁନ୍ଦର ହୋଇଛି ଦେଖିଲ । ଠିକ୍ ଆମର ଶିବସୁନ୍ଦର ପରି ନା ! କଣ କହୁଛ ? ଜନ୍ମହେବା ପିଲା ଇମିତି ସୁନ୍ଦର ସତେଜ ହେବା ଆଜଯାଏ ମୁଁ ଦେଖି ନ ଥିଲି !

ଧୂର୍ଜଟି—ଗାୟତ୍ରୀ କପରି ଅଛି କହିଲ ସୁବୋଧ ! ପୁଅ ତ ନିଶ୍ଚୟ ଭଲ ହେବା କଥା, ହୋଇଛି । ଗାୟତ୍ରୀ ବଡ଼ ଦୁର୍ବଳ ହୋଇ ପଡ଼ିଥିଲା ।

ଡାକ୍ତର—ତାଙ୍କୁ ଠିକଏ ଯତ୍ନ କରି ସେବା କରିବ ।

ଭିତରୁ—(କ୍ରନ୍ଦନ)

ଗାୟତ୍ରୀ—(ଭିତରୁ) ଆସ ଧୂର୍ଜଟି ଭାଇ, ପୁଅ ତୁମକୁ ଡାକୁଛି ।

ଧୂର୍ଜଟି—(ଆନନ୍ଦରେ) ପୁଅ ମୋତେ ଡାକୁ ନାହିଁ ଗାୟତ୍ରୀ, ବାପା କାହିଁକି ଆସି ନାହାନ୍ତି ବୋଲି କାନ୍ଦୁଛି ।

ଡାକ୍ତର—ଶିବବାବୁଙ୍କ ପାଖରୁ ସମ୍ବାଦ—

ଧୂର୍ଜଟି—ତାଙ୍କଠୁ ଟେଲିଗ୍ରାମ ଆସିଛି, ଏଇ ସନ୍ଧ୍ୟା ଗାଡ଼ିରେ ସେ ଆସି ପହଞ୍ଚିବେ ।

ଡାକ୍ତର—ସ୍ୱାଧୀନ ଭାରତର ଅଧୀଶ୍ୱର ହେବ ଏଇ ସଦ୍ୟଜାତ ଶିଶୁଟି । କଣ କହୁଛ ଧୂର୍ଜଟି ! କଏ କହିପାରିବ—

ଧୂର୍ଜଟି—(ଆବେଗ ଆନନ୍ଦରେ ଡାକ୍ତରଙ୍କ ହାତ ଧରି) ତୁମରି ଶୁଭ ଇଚ୍ଛାରେ ତ ସେ ଏ ଘରକୁ ଆସିଛି ସୁବୋଧ ! ତାକୁ ଦେଖି ମୋର ଏ ହୃଦୟ-ସାଗରରେ ଆନନ୍ଦ ତରଙ୍ଗ ଉଚ୍ଛୁଳି ଉଠୁଛି । ତୁମେ ଆଉ ଥରେ ଯାଇ ଗାୟତ୍ରୀକୁ ଦେଖିଆସ । ଖୁଡ଼ୀ ପରା ମୋ ହାତରେ ତାକୁ ଦେଇ ଯାଇଛନ୍ତି ।

ଡାକ୍ତର—ଆଚ୍ଛା ! ସେ ଯଦି ପୁଅଟିରେ—

ଧୂର୍ଜଟି—ସେ କଥା ଆଉ ପଚାର ନାହିଁ ସୁବୋଧ, ସେ ପରା ଅତି ବଡ଼ ଆଦର୍ଶ ଆଖି ଆଗରେ ରଖି ଗଢ଼ କରୁଛି ।

ଡାକ୍ତର—ହଁ, ଏପରି ବଡ଼ ଭାବନା ତ ସମସ୍ତଙ୍କ ମନରେ ଆସେ ନାହିଁ । ଏହିପରି ଆଦର୍ଶରେ ଅନୁପ୍ରାଣିତ ହେବା ହଜାରକେ ଜଣେ କାହିଁକି, କଥାରେ କହିଲେ ପରି କୋଟିକରେ ଗୋଟିଏ ହେଉଥିବେ । ଏମାନେ ମର୍ତ୍ତ୍ୟରେ ଜନ୍ମ ହୋଇ ମରି ମଧ୍ୟ ଅମର ହୋଇ ରହନ୍ତି ।

ଗାୟତ୍ରୀ—(ଭିତରୁ) ଧୂର୍ଜଟି ଭାଇ ! (ଶିଶୁର କ୍ରନ୍ଦନ) ପୁଅ କାନ୍ଦୁଛି, ଆସ ।

ଧୂର୍ଜଟି—ଚାଲ ସୁବୋଧ, ତାକୁ ଟିକିଏ ଦେଖି ଦେଇ ବିଶ୍ରାମ କରିବ । ସେଇ ସକାଳୁ ସନ୍ଧ୍ୟା ହେଲା, କିଛି କମ୍ ପରିଶ୍ରମ ଅର୍ଥାତ୍ ମାନସିକ ବ୍ୟସ୍ତତା ତ କିଛି କମ୍ ହୋଇ ନାହିଁ । ସେ ଘଟିରେ ଗ୍ରେଟ ଖଟରେ ବିଛଣା କରିଦେଇଛି । (ଉଭୟେ ପ୍ରସ୍ଥାନ)

ଗାୟତ୍ରୀ—(ଭିତରୁ) ଦେଖୁଛ ଧୂର୍ଜଟି ଭାଇ ! ପୁଅ କପରି ମୁହଁମୁଠି ଚାହୁଁଛି !

ଡାକ୍ତର—ସବୁ ତ ଭଲ ଦେଖୁଛୁ ଧୂର୍ଜଟି ବାବୁ ! ତୁମେ ଆଉ ବ୍ୟସ୍ତ ହେବାର କୌଣସି କାରଣ ନାହିଁ ।

ଧୂର୍ଜଟି—ଚାଲ ସୁବୋଧ, ତୁମକୁ ସେ ଘରେ ଛାଡ଼ିଦେଇ ଆସିବ ।

ଡାକ୍ତର—ଆଜ୍ଞା ଚାଲ ।          ( ଉଭୟଙ୍କ ଗମନ )

ଧୂର୍ଜଟି—ଏପରି ଡାକ୍ତର ବନ୍ଧୁଟିଏ ପାଇଲି ବୋଲି ଆଜ ଏ ବିପଦରୁ ରକ୍ଷା ପାଇଲି । ସତରେ, ତୁମେ ନ ଆସିଥିଲେ ମୋ ଅବସ୍ଥା କଣ ଯେ ହୋଇଥାନ୍ତା—

ଡାକ୍ତର—କଣ ଆଉ ମୁଁ କରିଛି ? ସବୁ ତ ସ୍ୱାଭାବିକ ଭାବରେ ହୋଇଛି । ଚାଲ । (ଉଭୟେ ପ୍ରସ୍ଥାନ)

ବଦୁ—(ଚା ଧରି ପ୍ରବେଶ) ଆହା ! ମୋ ମା' ମଣି ମରିଗଲେ । ଏଡ଼େ ସୁନ୍ଦର ନାତିକୁ ଦେଖିପାରିଲେ ନାହିଁ । ସେ ଥିଲେ ଏ ଘର ଆଜ ଆନନ୍ଦ ଉତ୍ସବରେ ପୂରି ଉଠିଥାନ୍ତା । (ପ୍ରସ୍ଥାନ)

ଗାୟତ୍ରୀ—(ଭିତରୁ) ବଦୁ ! ବଦୁ !

ବଦୁ—(ପ୍ରବେଶ) ଆଜ ମା'ମଣି ଥିଲେ ତାଙ୍କ ଗୋଡ଼ ତଳେ ପଡ଼ୁ ନ ଥାନ୍ତା । (ପ୍ରସ୍ଥାନ)

ବଦୁ—(ଭିତରୁ) ବୋହୂମା ! ତୁମେ ଟିକଏ ଶୋଇପଡ଼ । ମୁଁ ଯାଉଛି ଦୁଧ ଗରମ କରିଦେବ । (ପ୍ରସ୍ଥାନ)

ଗାୟତ୍ରୀ—(ଭିତରୁ) ବଦୁ ବୁଢ଼ୀ ଖାଲି ଅସ୍ଥିର ହୋଇ ମୋ ପାଖରୁ ଚାଲିଯାଉଛି । ଶୋଇବାକୁ କହିଦେଇ ଚାଲିଗଲା । ମୋ ଆଖିରେ ପଲକ କଣ ପଡ଼ୁଛି ? ପାଦଶବ୍ଦ ଶୁଭୁଛି ଦୂରରୁ । ଆସିଗଲେ କି ବୋଲି ଚାହୁଁଛି । ସତେ କି ଗତ ଜନ୍ମରେ

ତାଙ୍କୁ ଦେଖିଥିଲି ଘାର୍ଘ ନ ମାସ ତଳେ । ନାଟହୃଦୟରୁ କି ସହସ୍ତ୍ରୁ, ମୁଁ ନିଜେ ବସି ତା ଦ୍ୱୋଇ ଘୃତୁଛି ।

ବନ୍ଦୂ—(ଭିତରୁ) ବୋହୂମା ! ଧୂର୍ଜଟି ବାବୁ, ଡାକ୍ତରବାବୁ ସବୁ ପୁଅମଣିଙ୍କର ପୋଥିଘରେ ବସିଛନ୍ତି, ଡାକିଦେବ ? ପୁଅମଣି ଆସିଲେ ନାହିଁ । ନୂଆ ପୁଅ ଅନାଇ ରହିଛି । କାନ୍ଦି କାନ୍ଦି ଡାକି ଡାକି ଶୋଇପଡ଼ିଛି ।

ଶିବ—(ପ୍ରବେଶ) (ମୁଖରେ ଦାଢ଼ି ବଢ଼ିଯାଇଛି । ପରିଧାନ ଶ୍ରେଷ୍ଠ ଗାମୁଛା, ଶ୍ରେଷ୍ଠ ଗୃଦର) (ପ୍ରବେଶ କରୁ କରୁ) (ଶୋକାତୁର ଭାବରେ) ବୋଉ ! ବୋଉ ! ବୋଉ ! ବୋଉ ନାହିଁ ! ବୋଉ ଗୃଲିଗଲୁ । ଗୃଲିଗଲୁ ବୋଉ ! ଦେଶର ସ୍ୱାଧୀନତା ସମ୍ବାଦ ଦେଖିପାରିଲୁ ନାହିଁ ।

ଗାୟତ୍ରୀ—(ଦ୍ରୁତପଦରେ ପ୍ରବେଶ କରୁ କରୁ) ତୁମେ ଆସିଛ, ଆସିଛ ମୋର ଆଶାର ଅସ୍ତିତ ! ପ୍ରଭୁ ମୋର ! (ପଦତଳେ ପତନ)

ଶିବ—(ଉଠେଇ) (ଚିତ୍କାର କରି) ଗାୟତ୍ରୀ ! ଗାୟତ୍ରୀ ! (ବସି କୋଳକୁ ଆଉଜେଇ ଧରି) ହାୟ ଗାୟତ୍ରୀ !

ଧୂର୍ଜଟି—(ପ୍ରବେଶ କରୁ କରୁ) ଶିବ ! ଶିବ ! (ଦେଖି) ଗାୟତ୍ରୀ ! ସୁବୋଧ ! ସୁବୋଧ ! ଗାୟତ୍ରୀ ଗୃଲିଗଲା ।

ଡାକ୍ତର—(ପ୍ରବେଶ, ଦେଖିବା) ହାର୍ଟଫେଲ ।

ଶିବ—(ଗମ୍ଭୀର ସହଜ ଭାବରେ) ବଡ଼ ଆଶା କରି ଆସିଥିଲି, ସ୍ୱାଧୀନତା-ସଂଗ୍ରାମ ସମସ୍ୟା ଭିତରକୁ ପ୍ରବେଶ ନ କରି ଶାନ୍ତିମୟ ଗୃହସ୍ଥ ଜୀବନ ଯାପନ କରିବି ବୋଲି । ଭାବିଥିଲି, ବୋଉର ସେବା କରି ଗାୟତ୍ରୀକୁ ସୁଖୀ କରି ଜନ୍ମଜୀବନ ସାର୍ଥକ କରିଦେବି । କିନ୍ତୁ ସେ ଦୁହେଁ ମୋର କଠୋର

ଆଚରଣ ସହ୍ୟ କରି ନ ପାରି ମୋତେ ପରିତ୍ୟାଗ କରି ଚାଲିଗଲେ । ଈଶ୍ୱରଙ୍କ ଇଚ୍ଛା ଅନ୍ୟ ପ୍ରକାର ।

ଧୂର୍ଜଟି—ସୁବୋଧ, ଆଉ ଥରେ ଦେଖ । (ପ୍ରସ୍ଥାନ)

ଡାକ୍ତର—(ଦେଖିବା) ଆଉ କୌଣସି ଆଶା ନାହିଁ ।

ଶିବ—(ତଳେ ଶୁଆଇଦେଇ) (ମଥାରେ ହାତ ଦେଇ) ମୋର ହୃଦୟର ଏକମାତ୍ର ନିବିଡ଼ ଗ୍ରନ୍ଥିବନ୍ଧନ ! ହୃଦୟଲକ୍ଷ୍ମୀ ! ମୋତେ ଏକାନ୍ତ ଭାବରେ ଶ୍ରୀହୀନ କରିଦେଇ ଚାଲିଗଲ ଲକ୍ଷ୍ମୀ ମୋର ! ଗାୟତ୍ରୀ !

(ଶିଶୁପୁତ୍ରକୁ କୋଳରେ ଧରି ଧୂର୍ଜଟି ପ୍ରବେଶ)

ଧୂର୍ଜଟି—(କୋଳକୁ ଦେଇ) ଶିବ, ଆଜି ତୋର ଜନ୍ମଦିନରେ ଜନ୍ମ ହୋଇଛି ତୋର ସନ୍ତାନ । ଗାୟତ୍ରୀ ତୋତେ ଦେଇଯାଇଛି ତା ଧୀଶକ୍ତିଟିକକ ।

ଶିବ—(କୋଳରେ ଧରି ନିରେଖି ଚାହିଁ) ଧୂର୍ଜଟି ଭାଇନା ! ତୁମେ ଏ ଲକ୍ଷ୍ମୀହୀନ ହାତରେ ଲକ୍ଷ୍ମୀଙ୍କୁ ଆଣି ଥୋଇ ଦେଇଥିଲ । ପ୍ରେମହୀନର ହାତରେ ପ୍ରତ୍ୟର୍ପଣ କରି ଦେଇଥିଲ ପ୍ରେମମୟୀଙ୍କୁ । ହାୟ ଗାୟତ୍ରୀ, ତୁମକୁ ମୁଁ ଦିନେ ସୁଖୀ କରିପାରି ନାହିଁ । ସେଇ ଅପରାଧରେ ମୋତେ ବର୍ଜନ କରି ଚାଲିଗଲ ଲକ୍ଷ୍ମୀ ମୋର !

ଧୂର୍ଜଟି—ତୋର ସ୍ମୃତିଟିକକ ନେଇ ସେ ଯେ ପରମ ଆନନ୍ଦରେ ଥିଲା ।

ଶିବ—ମୁଁ ତାର ସ୍ମୃତିଟିକ ଧରି ଏ ଉତ୍କଳଭୂମି ମୋର ବୋଲି ବିଶ୍ୱାସ କରି ଯାଉଛି ଧୂର୍ଜଟି ଭାଇ ! ଗାଙ୍ଗପୁରୀର ସନ୍ତାନଟିକୁ ଆଜି ତୁମରି ହାତରେ ସମର୍ପଣ କରିଦେଉଛି । (କୋଳକୁ ପ୍ରତ୍ୟର୍ପଣ) (ଉଭୟେ ବିପରୀତ ଦିଗରେ ପ୍ରସ୍ଥାନ)

—ସମାପ୍ତ—

———